# ସମୟର ସ୍ୱର

ଲେଖକ :

**ଡକ୍ଟର ଗୋବିନ୍ଦ ଚନ୍ଦ୍ର ଦାଶ**

ରସାୟନ ବିଜ୍ଞାନ ପ୍ରାଧ୍ୟାପକ

ସାମନ୍ତ ଚନ୍ଦ୍ରଶେଖର ସ୍ୱୟଂଶାସିତ ମହାବିଦ୍ୟାଳୟ, ପୁରୀ



ପ୍ରକାଶକ : ରୂପା ପବ୍ଲିକେଶନସ୍, ପ୍ଲଟ ନଂ : ୭, ଅଶୋକ ନଗର, ଭୁବନେଶ୍ୱର
ଦୂରଭାଷ : ୦୬୭୪ - ୨୫୩୧୦୬୪

ପ୍ରଥମ ପ୍ରକାଶ : ରଜ ସଂକ୍ରାନ୍ତି ୨୦୦୭

ସଂଖ୍ୟା : ୬୦୦

ପ୍ରଚ୍ଛଦ : ବିଭୁ ପ୍ରସୂନ

ମୁଦ୍ରଣ : ଦିବ୍ୟ ମୁଦ୍ରଣୀ
ଦିବ୍ୟ ବିହାର, ସାମନ୍ତରାପୁର, ଭୁବନେଶ୍ୱର,
ଭୁବନେଶ୍ୱର - ୭୫୧୦୦୨

ମୂଲ୍ୟ : ୧୦୦/- (ଏକ ଶତ ଟଙ୍କା ମାତ୍ର)



ସ୍ୱର୍ଗତ ମଧୁସୂଦନ ଦାଶ

## ଉତ୍ସର୍ଗ

ସମୟ ସ୍ରୋତରେ ଭାସିଯାଉଥିବା ମୁହୂର୍ତ୍ତମାନଙ୍କୁ
ଯାହାଙ୍କ ଇସାରାରେ ଏପର୍ଯ୍ୟନ୍ତ
ଆପଣେଇ ନେଇପାରିଛି
ସେଇ ନନାଙ୍କ
ଉଦ୍ଦେଶ୍ୟରେ...

–ଗୋବିନ୍ଦ

ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତି
ନିର୍ଦ୍ଦେଶକ
ସୂଚନା ଓ ଲୋକସଂପର୍କ ବିଭାଗ
ଓଡ଼ିଶା

# ଅଭିମତ

ଡଃ ଗୋବିନ୍ଦ ଚନ୍ଦ୍ର ଦାଶଙ୍କ କବିତା ସଂକଳନ 'ସମୟର ସ୍ୱର'ରେ ସନ୍ନିବେଶିତ ସତଚାଳିଶଟି ଯାକ କବିତା ଆଦ୍ୟୋପାନ୍ତ ପାଠ କରିବାର ସୁଯୋଗ ଯୁଟିଥିଲା । ସମସ୍ତ କବିତା ଗୁଡ଼ିକୁ ନିବିଷ୍ଟ ଚିତ୍ତରେ ପାଠ କରିବା ସମ୍ଭବ ହୋଇପାରିନଥିଲେ ମଧ୍ୟ ଅଧିକାଂଶ କବିତା ମୋତେ ଆଶାତୀତ ମୁଗ୍ଧ କରିଛି । କବିତାର ସମୀକ୍ଷା, ସମାଲୋଚନା ବା ମୂଲ୍ୟାୟନ କରିବାର ଯୋଗ୍ୟତା ମୋର ନାହିଁ । କିନ୍ତୁ ଓଡ଼ିଆ ସାହିତ୍ୟରେ ରୁଚି ରଖୁଥିବା ଜଣେ ସାଧାରଣ ପାଠକ ଭାବରେ ମୋର ମତାମତ ରଖିବା ପାଇଁ ଗୋବିନ୍ଦବାବୁଙ୍କ ସନିର୍ବନ୍ଧ ଅନୁରୋଧ ଏଡ଼ାଇ ଯିବା ମଧ୍ୟ ମୋ ପକ୍ଷରେ ସମ୍ଭବ ନୁହେଁ ।

ଡକ୍ଟର ଦାଶ ରସାୟନ ବିଜ୍ଞାନର ଜଣେ କୃତବିଦ୍ୟ ଛାତ୍ର, ଅଧ୍ୟାପକ ଓ ଗବେଷକ । ଶିକ୍ଷା, ବୃତ୍ତି ଓ ପ୍ରବୃତ୍ତି ଦୃଷ୍ଟିରୁ କେବଳ ବିଜ୍ଞାନ କ୍ଷେତ୍ରରେ ନୁହେଁ, ମଣିଷ ଚରିତ୍ର ବା ପ୍ରକୃତିର ପର୍ଯ୍ୟବେକ୍ଷଣ ଦିଗରେ ମଧ୍ୟ ତାଙ୍କର ସୂକ୍ଷ୍ମ ଅବବୋଧ ଓ ତୀକ୍ଷ୍ଣ ଧିଷଣା ରହିଛି । ଏହା ତାଙ୍କର କବିତା ସମଗ୍ରରେ ସ୍ପଷ୍ଟ ରୂପେ ପ୍ରତିଫଳିତ ହୋଇଛି ।

ସମଗ୍ର କବିତା ଗୁଡ଼ିକର ରଚନା କାଳ ଅଶୀ ଦଶକ । ଏହି ଦଶନ୍ଧି କବିଙ୍କର ଯୌବନର ଉତ୍ତରଣ ଓ ପ୍ରୌଢ଼ତ୍ୱର ଉନ୍ମେଷର ସନ୍ଧିକାଳ । ସମାବିଷ୍ଟ କେତେକ କବିତାରେ ରୋମାଣ୍ଟିକ ଚେତନାର ଅନ୍ତଃସ୍ୱର ବାରିହୁଏ ଏବଂ ଅନ୍ୟ କେତେକ କବିତାରେ ଦାର୍ଶନିକ ଦୃଷ୍ଟିଭଙ୍ଗୀ ଓ ଜୀବନର ନିଚ୍ଛକ ବାସ୍ତବତା ଉପଜୀବ୍ୟ ହୋଇଥିବାର ଆଭାସ ମିଳେ । ସେହିପରି ପ୍ରେମ, ବିରହ, ନିଃସଙ୍ଗତା, ଶୂନ୍ୟତା, ପ୍ରତାରଣା ସହିତ ବିପ୍ଳବ, ବିଦ୍ରୋହ ଓ ସଂଗ୍ରାମର ସ୍ୱର ମଧ୍ୟ ଅନୁରଣିତ ହୋଇଛି ଅନ୍ୟ କେତେକ କବିତାରେ । ସଜ୍ଜୀକରଣ ଓ ପରିପାଟୀ ଦୃଷ୍ଟିରୁ କବିତାଗୁଡ଼ିକ ମାର୍ଜିତ ଓ ପରିଚ୍ଛନ୍ନ ।

ପ୍ରାଚୀନ ସାହିତ୍ୟର ବ୍ୟାଖ୍ୟାକାର ଓ ଭାଷ୍ୟକାରମାନେ କବିତା ସ୍ରଷ୍ଟାକୁ 'ପ୍ରଜାପତି' ଭାବରେ ଅଭିହିତ କରିବା ପାଇଁ କୁଣ୍ଠା ପ୍ରକାଶ କରି ନାହାନ୍ତି । ଏକ ସର୍ଜନଶୀଳ କବି ନିଜର ସୃଷ୍ଟି ସମ୍ଭାରରେ ଭାବାବେଗ ଓ ଚିତ୍ରକଳ୍ପ ଜରିଆରେ ପାଠକକୁ ଏକ ଅତୀନ୍ଦ୍ରିୟ ଜଗତକୁ ନେଇଯିବାକୁ ଚାହେଁ । କବିତାର ସୂକ୍ଷ୍ମ ଅବବୋଧ ଟିକକ

ପାଠକର ହୃଦୟ ଗ୍ରାହ୍ୟ ହୋଇପାରିଲେ କବି ହୁଏ ଜଣେ ସାର୍ଥକ ସ୍ରଷ୍ଟା । ଗୋବିନ୍ଦବାବୁଙ୍କ କବିତାଗୁଡ଼ିକ ହୃଦୟଗ୍ରାହୀ ଓ ମର୍ମସ୍ପର୍ଶୀ । ଭାବପ୍ରକାଶ ଓ ଶବ୍ଦର ଚମତ୍କାର ଗୁମ୍ଫନ ଅଧିକାଂଶ କବିତାକୁ ରସୋତ୍ତୀର୍ଣ୍ଣ କରିପାରିଛି ଏବଂ କବିତାଗୁଡ଼ିକ ସାଧାରଣ ପାଠକର ବୋଧଗମ୍ୟ ହୋଇପାରିଛି । କେତେକ ସମକାଳୀନ କବିତାରେ ଦୁର୍ବୋଧତା ଓ ମାତ୍ରାତିରିକ୍ତ ପ୍ରୟୋଗବାଦ ଅନେକ କ୍ଷେତ୍ରରେ ପାଠକମାନଙ୍କୁ କବିତା-ବିମୁଖ କରାଉଛି ବୋଲି ଅଭିଯୋଗ ହୁଏ । ମାତ୍ର ଆଲୋଚ୍ୟ କବିତା ଗୁଡ଼ିକ ଏହାର ବ୍ୟତିକ୍ରମ କହିବା ବାହୁଲ୍ୟ ହେବ ନାହିଁ ।

କବିତା ସଂକଳନର ପ୍ରାନ୍ତ ଭାଗରେ ସନ୍ନିହିତ କେତେକ ଅଣୁକବିତା ସଂପର୍କରେ ଦୁଇପଦ କହିବା ଏକାନ୍ତ ପ୍ରୟୋଜନ । ଖୁବ୍ କମ୍ ଶବ୍ଦରେ ସୀମିତ ମାତ୍ର ଦୁଇଧାଡ଼ିକିଆ କବିତାରେ କିଛିଟା ଗହନ ଓ ଗମ୍ଭୀର ଭାବର ପ୍ରକାଶ ସହିତ ଏଗୁଡ଼ିକ ବେଶ୍ ଆମୋଦଦାୟକ, ସୁଖପାଠ୍ୟ, ହୃଦ୍ୟ ଏବଂ ସ୍ମୃତିରେ ସାଇତି ରଖିଲା ଭଳି ଉପାଦେୟ ବସ୍ତୁ, ଏ ଧରଣର କବିତା ବିଶେଷ ଆଦର ଲାଭ କରିବ ଏବଂ ଅଧିକ କବିଙ୍କୁ ଏଭଳି ରଚନା ପାଇଁ ଅନୁପ୍ରେରିତ କରିବ ବୋଲି ମୋର ଆଶା ।

ଗୋବିନ୍ଦବାବୁ ଓଡ଼ିଆ ସାହିତ୍ୟ ବା କବିତା କ୍ଷେତ୍ରରେ ନବାଗତ ନୁହଁନ୍ତି । ଯଦିଚ 'ସମୟର ସ୍ୱର' ତାଙ୍କର ପ୍ରଥମ କବିତା ସଂକଳନ, ଏଥିରେ ପ୍ରକାଶିତ ଅନେକ କବିତା ଅଶୀ ଦଶକରେ ବିଭିନ୍ନ ପ୍ରତିଷ୍ଠିତ ପତ୍ରପତ୍ରିକା ଓ ସଂବାଦପତ୍ରରେ ପ୍ରକାଶିତ ହୋଇସାରିଛି । ମୁଁ ଆଶା କରିବି, ସେ ଆହୁରି ନିଷ୍ଠାପର ଭାବରେ ଲେଖନୀ ଚାଳନା କରିବେ, ଅଧିକ ଯଶସ୍ୱୀ ହେବେ ଓ ଓଡ଼ିଆ ବାଣୀଭଣ୍ଡାରକୁ ସମୃଦ୍ଧ କରିବା ପାଇଁ ଅଧିକ ଯତ୍ନଶୀଳ ହେବେ ।

'ସମୟର ସ୍ୱର' ପାଠକୀୟ ସ୍ୱୀକୃତି ଓ ଆଦୃତି ଲାଭ କରିବ ବୋଲି ମୁଁ ଆସ୍ଥା ରଖୁଛି ।

ଭୁବନେଶ୍ୱର
୯ ଜୁନ୍ ୨୦୦୭

**ବୈଷ୍ଣବ ପ୍ରସାଦ ମହାନ୍ତି**

# ନିଜକଥା

ପିଲାଦିନରୁ କବିତା ପ୍ରତି ମୋର ଅହେତୁକ ମମତା । କବିତାଟିଏ ପାଇଲେ ନପଢ଼ି ରହିପାରେନି । ପିଲାଦିନଟି କଟିଛି ବର୍ତ୍ତମାନର ଖୋର୍ଦ୍ଧା ଜିଲ୍ଲା ବାଲିଅନ୍ତା ଥାନା ଅନ୍ତର୍ଗତ ଭିଙ୍ଗାରପୁର ଗ୍ରାମରେ । ମୋ ନନା ସ୍ୱର୍ଗତ ମଧୁସୂଦନ ଦାଶ ଭିଙ୍ଗାରପୁର ମାଇନର ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ । ପିଲାଦିନୁ କିଛି କିଛି ଲେଖିବାକୁ ସବୁବେଳେ ପ୍ରେରଣା ଦେଉଥିଲେ । ଗାଁରେ ବକ୍ରେଶ୍ୱର ହାଇସ୍କୁଲରେ ପଢ଼ିବା ବେଳ ଠାରୁ ଗଳ୍ପ ଓ ପ୍ରବନ୍ଧ ଲେଖୁଥିଲି । ରେଭେନ୍‌ସା କଲେଜର ପଶ୍ଚିମ ଛାତ୍ରାବାସରେ ଥିବାବେଳେ ଆମେ କେତେ ଜଣ ବନ୍ଧୁ ମିଶି ଗୋଟିଏ ପ୍ରାଚୀର ପତ୍ର ବାହାର କରିବାକୁ ମନସ୍ଥ କଲୁ । ସେଥିରେ ମୋର ପ୍ରଥମ କରି କବିତାଟିଏ ପ୍ରକାଶ ପାଇଲା । ବିଜ୍ଞାନର ଛାତ୍ର ହିସାବରେ ବେଶୀ ସମୟ ମିଳୁନଥିଲା କବିତା କି ଗଳ୍ପ ଲେଖିବାକୁ । ତଥାପି ବେଳେବେଳେ କିଛି କିଛି ଲେଖି ହୋଇଯାଉଥିଲା । ଏ ବହିରେ ପ୍ରକାଶିତ ଅଧିକାଂଶ କବିତା ମୋ ଚାକିରୀ ଜୀବନର – ଅଶୀ ଦଶକର । ଅଧ୍ୟାପକ ଚାକିରୀରେ ବହୁତ ସମୟ ମିଳେ ଲେଖାପଢ଼ା କରିବାକୁ । ତା' ଭିତରେ ଅନେକ କବିତା ଜନ୍ମ ନିଅନ୍ତି । ୧୯୮୨ ମସିହାରେ ବିଜେବି କଲେଜକୁ ବଦଳି ହୋଇଆସେ । ଗଳ୍ପ, ପ୍ରବନ୍ଧ ଓ କବିତା ଭିତରୁ ମୁଁ କେଜାଣି କାହିଁକି କବିତାକୁ ଆପଣେଇ ନେଲି । ମୁଁ ଦେଖିଲି ନିଜ ଚିନ୍ତାଧାରାକୁ ଖୁବ୍ ସହଜରେ ବ୍ୟକ୍ତ କରିବାର ମାଧମ ହେଉଛି କବିତା । ମୋର ଶ୍ୱଶୁର ବିଶିଷ୍ଟ କମ୍ୟୁନିଷ୍ଟ ନେତା ତଥା ମାର୍କସ୍‌ବାଦୀ ଦର୍ଶନର ଖ୍ୟାତନାମା ପ୍ରବକ୍ତା ସ୍ୱର୍ଗତ ରାମକୃଷ୍ଣ ପତି ହେଉଛନ୍ତି ମୋର ଅଧିକାଂଶ କବିତାର ପ୍ରଥମ ପାଠକ । ସେ ମୋତେ ସବୁବେଳେ ଉତ୍ସାହିତ କରୁଥିଲେ କବିତା ଲେଖିବା ପାଇଁ ।

ମାଆ କୋଳରେ ଶିଶୁଟିଏ ଜନ୍ମ ନେଲା ପରି କବିତା ଜନ୍ମ ନିଏ କବିର ମାନସ ପଟରେ । ବିଭିନ୍ନ ଶବ୍ଦର ଯାଦୁକରୀ ଖେଳରେ କବିତାର ପଂକ୍ତି ସବୁ ପରିପୁଷ୍ଟ ହୁଅନ୍ତି । ଶବ୍ଦ ସୁମନ ସବୁ ଅଯାଚିତ ଭାବରେ ଆଗେଇ ଆସନ୍ତି ମାଳା ଭାବରେ ଗୁନ୍ଥା ହୋଇ କବିର ସାରସ୍ୱତ ଲେଖନୀ ମୂନରେ କବିତାକୁ ବାସ୍ତବ ରୂପ ଦେବା ପାଇଁ । ମନରେ ଉଦ୍‌ବେଳିତ ହେଉଥିବା ଭାବନା, ସମ୍ଭାବନା କବିପ୍ରାଣକୁ ଚଳଚଞ୍ଚଳ କରିପକାଏ – ଯେଉଁଥିରୁ କବିତାର ରୂପକଳ୍ପ ଆଙ୍କି ହୋଇଯାଏ କବିର ମାନସପଟରେ । କବି ତା'ର

ସତ୍ତା ହଜାଇଦିଏ କବିତାର ପ୍ରତିଟି ପଂକ୍ତିରେ – କବିତା ତା'ର ଲେଖନୀକୁ ସମୃଦ୍ଧ କରିବା ପାଇଁ ପ୍ରେରଣାର ଉତ୍ସ ହୋଇଯାଏ । ପାଠକ ପାଠିକା ମାନଙ୍କର ହୃଦୟକୁ ଛୁଇଁବାର ପ୍ରୟାସରେ ସତତ ବ୍ରତୀ ହୋଇଯାଏ କବିଟି ।

ଶିଳ୍ପୀଟିଏ ନିହାଣ ମୁନରେ ପଥରକୁ କାଟି ମୂର୍ତ୍ତି ଗଢ଼ିଲା ପରି କବିର ଲେଖନୀ ମୁନରେ କବିତା ହୋଇଉଠେ ଜୀବନ୍ତ । ପାହାଡ଼ର ବୁକୁଚିରି ଝରଣ
ପରି କବିତାଟି ସ୍ୱତଃ ଝରିଆସେ କବିର ହୃଦୟରୁ । କଳକଳ ନାଦ କରି ଜଳର ପ୍ରାଚୁର୍ଯ୍ୟ ଭିତରେ ଝରଣାଟି ଉଛୁଳି ଗଲା ପରି ଶବ୍ଦ ସମ୍ଭାରରେ କବିତାର କଳେବର ପ୍ରାଣବନ୍ତ ହୋଇଯାଏ ।

ସମାଜରେ ଘଟୁଥିବା ଭିନ୍ନ ଭିନ୍ନ ଘଟଣାକୁ ଆଧାର କରି ମୁଁ କବିତା ଲେଖେ । କବିତା ମାଧମରେ ସମାଜର ବାସ୍ତବ ଚିତ୍ରକୁ ଉପସ୍ଥାପନ କରିବାର ପ୍ରୟାସ କରି ଆସିଛି । ଏ ପ୍ରକାରର ପ୍ରଚେଷ୍ଟା ମୋତେ ଆଶାତୀତ ଆନନ୍ଦ ଦେଇଛି ଯେତେବେଳେ ତାହା ଗୋଟିଏ ଭଲ ପତ୍ରିକାରେ ପ୍ରକାଶ ପାଇଛି । କବିତା ଭିତରେ ମୁଁ ସ୍ୱପ୍ନ ଦେଖେ ସମାଜକୁ, ସମାଜରେ ଘଟୁଥିବା ନିତିଦିନିଆ ଘଟଣାବଳୀକୁ, ବାସ୍ତବତାକୁ ତଥା ମନର ଆବେଗ, ଉତ୍କଣ୍ଠା, ସ୍ମୃତି ଓ ଅନୁଭୂତିମାନଙ୍କୁ । ସନ୍ଧାନୀ ମନର ଦୃଶ୍ୟପଟ୍ଟରେ କବିତା ଦେଖାଦେଇଛି ଭିନ୍ନ ଭିନ୍ନ ରୂପରେ । କେତେବେଳେ ଭକ୍ତି ନୈବେଦ୍ୟର ଫଲ୍‌ଗୁ ବୁହାଇ ଦେଇଛି ତ ପୁଣି କେତେବେଳେ କଠୋର, ରୁକ୍ଷ, ବିଭତ୍ସ ମାନସିକତାର ସ୍ରୋତ ହୋଇ ଦେଖାଦେଇଛି । ସୁଖ–ଦୁଃଖ, ପାପ–ପୁଣ୍ୟ, ହସ–ଖୁସି, ଆଶା–ଆକାଂକ୍ଷା, କୋମଳତା, ଉଦାରତା ସବୁକିଛି ଦୃଶ୍ୟ ପଟ୍ଟରେ ଭାବାବେଗ ସୃଷ୍ଟି କରିଛନ୍ତି – ଯାହାକୁ ନେଇ କବିତା ଲେଖିବାର ଖୋରାକ ମିଳିଛି ।

ଏଥିରେ ପ୍ରକାଶିତ କେତୋଟି କବିତା ଯଦି ପାଠକ ପାଠିକା ମାନଙ୍କ ହୃଦୟକୁ ଛୁଇଁ ପାରିବ ତେବେ ଶ୍ରମ ସାର୍ଥକ ହେଲା ବୋଲି ଜାଣିବି । ବହି ଶେଷ ଭାଗରେ କେତୋଟି ଅଣୁକବିତା ସ୍ଥାନ ପାଇଛି । ଏସବୁ ଅଣୁକବିତା, ଗତ କିଛି ଦିନ ଭିତରେ ଲେଖିଛି । ଟ୍ରେନ୍‌ରେ ପୁରୀକୁ ଗଲାବେଳେ, ବସ୍‌ରେ ପୁରୀରୁ ଫେରିବା ବେଳେ କିମ୍ବା ସନ୍ଧ୍ୟାରେ ଘର ଛାତ ଉପରେ ପବନ ଖାଇଲା ବେଳେ ଏସବୁ କବିତା ଲେଖି ହୋଇଯାଇଛି ।

ମୋର ବନ୍ଧୁ ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗର ନିର୍ଦ୍ଦେଶକ ଶ୍ରୀଯୁକ୍ତ ବୈଷ୍ଣବ ପ୍ରସାଦ ମହାନ୍ତି ଓ ସ୍ୱନାମଧନ୍ୟ ଡାକ୍ତର ଜଗଦୀଶ ଚନ୍ଦ୍ର ଆଚାର୍ଯ୍ୟ, ଉଭୟଙ୍କ

ପାଖରେ ମୁଁ ଏକ ପ୍ରକାର ଋଣୀ । ପ୍ରାତଃ ଭ୍ରମଣ ସମୟରେ ଉଭୟଙ୍କର ଅନୁଭୂତି ଶୁଣି ଯଥେଷ୍ଟ ପ୍ରେରଣା ପାଇଛି କବିତା ଲେଖିବା ପାଇଁ ଏବଂ କବିତା ଗୁଡ଼ିକୁ ପୁସ୍ତକ ରୂପ ଦେବା ପାଇଁ । ମୋର କବିତା ଗୁଡ଼ିକର ପାଣ୍ଡୁଲିପି ପ୍ରସ୍ତୁତି କରିବାରେ ତଥା ମୋର କବିତା ଗୁଡ଼ିକ ପଢ଼ି ମତାମତ ଦେବାରେ ମୋର ସହଧର୍ମିଣୀ ଅଧ୍ୟାପିକା ଡକ୍ଟର ରୀତା ପତିଙ୍କର ସାହାଯ୍ୟ ଭୁଲିବାର ନୁହେଁ । ଶ୍ରୀଯୁକ୍ତ ଈଶ୍ୱର ଚନ୍ଦ୍ର ତ୍ରିପାଠୀ ହେଉଛନ୍ତି ମୋ ସୁଖ–ଦୁଃଖର ସାଥୀ । ମୋତେ ସବୁବେଳେ ଉତ୍ସାହିତ କରିଛନ୍ତି କବିତା ମାଧ୍ୟମରେ ମୋ ଭିତରେ ଉଙ୍କି ମାରୁଥିବା ଚେତନାକୁ ପରିପ୍ରକାଶ କରିବା ପାଇଁ – ସେଥିପାଇଁ ତାଙ୍କ ପାଖରେ ମୁଁ ଚିରକୃତଜ୍ଞ । ବିଜେବି କଲେଜରେ ଅଧ୍ୟାପନା କଲା ସମୟରେ ଓଡ଼ିଆ ବିଭାଗର ରିଡ଼ର ରମେଶ ଚନ୍ଦ୍ର ଦାସଙ୍କ ସହିତ ପରିଚୟ ହୁଏ । ତାଙ୍କରି ପ୍ରେରଣାରେ ଆଜି ମୋର ଏହି ପ୍ରଥମ କବିତା ସଂକଳନ ''ସମୟର ସ୍ୱର'' ପ୍ରକାଶ ପାଇବାକୁ ଯାଉଛି । ତାଙ୍କ ପୁତ୍ର ବିଭୁବାବୁ ଯଥେଷ୍ଟ ପରିଶ୍ରମ କରିଛନ୍ତି ଖୁବ୍ ସ୍ୱଳ୍ପ ସମୟ ଭିତରେ ପୁସ୍ତକଟିକୁ ପ୍ରକାଶନ କରିବାରେ, ସେଥିପାଇଁ ରମେଶବାବୁ ଓ ବିଭୁବାବୁଙ୍କୁ ମୁଁ ଧନ୍ୟବାଦ ନଜଣାଇ ରହିପାରୁ ନାହିଁ । ଶେଷରେ ଲାଲ୍‌ଟୁ, ରୂପା, ଟୁକୁନୁ, ଚନ୍ଦନ ଓ ଟୁଟୁଲ୍ ଆଦି ପିଲାମାନଙ୍କର ଉପସ୍ଥିତି କବିତା ଗୁଡ଼ିକୁ ଜୀବନ୍ତ କରିଥିବାରୁ ସେମାନଙ୍କୁ ମୋର ଅନ୍ତରରୁ ଆଶୀର୍ବାଦ ଦେଉଛି । ମୋର ନନା ସ୍ୱର୍ଗତ ମଧୁସୂଦନ ଦାଶଙ୍କ ସ୍ମୃତି ଉଦ୍ଦେଶ୍ୟରେ ଉକ୍ତ ପୁସ୍ତକଟିକୁ ଉତ୍ସର୍ଗ କରୁଛି ।

ରଜ ସଂକ୍ରାନ୍ତି
୧୫.୦୬.୦୭

ଗୋବିନ୍ଦ ଚନ୍ଦ୍ର ଦାଶ

# ସୂଚୀପତ୍ର

# ଏକାକାର

ସେ 'ଏକ ଓ ଅଭିନ୍ନ''
ନିରାକାର, ପରମ ବ୍ରହ୍ମ ସନାତନ
ନିତ୍ୟ ସୁଂଦର ସୁମଧୁର
ଚିରଈପ୍‌ସିତ ପାଦପଦ୍ମେ ତାଂକ
କୋଟି ନମସ୍କାର - ବାରଂବାର ।

ସେ ମୋର ଓ ତୁମର
ଆମ ସମସ୍ତଙ୍କର - ଏକାନ୍ତ ଆପଣାର
ବିକ୍ଷିପ୍ତ ଭାବନାର ସଂକ୍ଷିପ୍ତ ଟିପ୍‌ପଣୀ
ଅବା ରାଶିରାଶି ପୂଣ୍ୟର ପେଣ୍ଟଥଳୀ
ନୂଆ ନୂଆଚେତନାର ଉତ୍ସ
କିଂବା ଜାଗତିକ ରଶ୍ମୀର ଉଚ୍ଛ୍ୱାସ ।

ସେ ବହୁରୂପୀ - ସର୍ବବିଦ୍ୟମାନ
ସକଳ ଶକ୍ତିର ଆଧାର
ନାରୀର ସୀମଂତ ସିଂଦୁର
ଶିଶୁର ନୟନର ନୀର
ପଥହରା ପଥୁକୀର ଆଶାର ବୋଇତ
ନର୍ତ୍ତକୀର ନୂପୁର ନିକ୍ୱଣ
କେବେ ସୁଂଦର ସୁଠାମ ଅବୟବ
କେବେ ତ କଦର୍ଯ୍ୟ କୁତ୍ସିତ କଦାକାର ରୂପ
ଭିନ୍ନ ବେଶେ ଭିନ୍ନ ନାମ ବହି
ଦିଅନ୍ତି ଅଭୟ - 'ବରାଭୟ' ।

କେଉଁ ଅଜଣା ମୂଲକରେ ଘର ତାଂକର
ନାହିଁ ତା' ଠିକଣା
ଅନଂତ ଶୟନେ ଥାଇ
ତାଂକୁ ସବୁ ଜଣା
ରୋଗୀର ଯଂତ୍ରଣା ଆଉ ଦୁଃଖିନୀର

ଭାଗ୍ୟ ବିଡ଼ମ୍ବନା
ହସର ଢୁଆର – ଗର୍ବ ଅହଂକାର କା'ର
ସବୁଜାଣି ନ ଜାଣିଲା ପରି
ଶୋଇଥାଂତି – 'ଦିନରାତି' ।

ଉପରେ ପରିବ୍ୟାପ୍ତ
ଦିଗହରା ଅନଂତ ଆକାଶ
ତଳେ ନଦ, ନଦୀ ସମୁଦ୍ରରେ ଜଳ ଅପ୍ରମିତ
ଆତଯାତ ହେଉଛନ୍ତି ନର ବା କିନ୍ନର
ପଶୁପକ୍ଷୀ ଗଛଲତା
ସୂର୍ଯ୍ୟ, ଚଂଦ୍ର, ଗ୍ରହ, ତାରା ସବୁକିଛି
ତାଂକରି ନିର୍ଦ୍ଦେଶେ – 'ଅପ୍ରକାଶେ' ।

ଶୈଶବର କଅଁଳିଆ ଡଂକ ମୋଡ଼ି
ଆସେ ଉଦ୍ଧତ ଯୌବନ – ପାଜି ଶଇତାନ
ଉଚ୍ଛନ୍ନ ଛନଛନ ମନ
କେତେ ମାନ ଅଭିମାନ
ତା'ପରେ ଜରାଜୀର୍ଣ୍ଣ ବାର୍ଦ୍ଧକ୍ୟର କରୁଣ ଜୀବନ
ଦାନପୁଣ୍ୟ ଧର୍ମର ନାମରେ
ପାପର ମୋକ୍ଷ ବିମୋଚନ
ଦିନରାତି ରଟୁଥାଏ ରାମନାମ
କୃଷ୍ଣନାମ – ଈଶ୍ୱର ବନାମ ।

ଆବେଗ ଢେଉରେ ସୁଅକାଟି
ଚାଲେ ଜୀବନ ନଉକା
ଇହକାଳେ ପରକାଳେ ସାଥୀ ସିଏ ଏକା
ଦୁର୍ଭାଗ୍ୟର ଘନକଳା ବାଦଲ ଉହାଡ଼େ
ଜହ୍ନ ହୋଇ ଦିଅନ୍ତି ସେ ଦେଖା
ଭକ୍ତର ବିପଦେ ନିଦର ପହଡ଼ ଭାଂଗେ
ବଇକୁଣ୍ଠ ଛାଡ଼ି – ଆସନ୍ତି ଦଉଡ଼ି
ଖେଳାଂତି ସନ୍ତପ୍ତ ହୃଦେ
ପ୍ରୀତିର ଲହଡ଼ି ।

•••◆••

## ସମୟର ସ୍ୱର

ଏକ ଅନୁର୍ବର ମସ୍ତିଷ୍କର ତୀବ୍ର ପ୍ରତିକ୍ରିୟା
ନଗ୍ନତାର ବିଭସ୍ସ କାଂଡ
ଅପଳାପ ଆତ୍ମାର ଦେହରେ
ସଂଚରୁଚି କ୍ରମେ କ୍ରମେ
ଦେହରୁ ଦେହକୁ ଡେଇଁ
ମନରୁ ମନକୁ ଛୁଇଁ
ସଂକ୍ରମିତ କରି ଆତ୍ମା, ଦେହ ଓ ମନ
ଏବଂ ଅଛି ଯେତେଯେତେ
ସୁସ୍ଥ, ପରିଷ୍କାର ନିରୋଳା ଜୀବନ ।

ସୁଂଦର ଦିଶୁଚି ଆଖିକୁ ସବୁଠାରୁ
ଉପରେ ଉଡୁଥିବା ଚଢ଼େଇଟି
ତଳର ଚଢ଼େଇ ବାହୁନୁଚି
ତା'ର ଅକ୍ଳାନ୍ତ ଚେଷ୍ଟା ଓ
ଅଦମ୍ୟ ଉତ୍ସାହ ଭାଂଗିପଡୁଚି
ସତେ ଯେମିତି ତଳୁ ଗୋଡ଼ ତା'ର
କିଏ ସେ ଟାଣୁଚି ।

ଡେଣାରେ ନାହିଁ ତା'ର ଶକ୍ତି
କାହାକୁ ଦେଉ ନାହିଁ ଧରା
ଅଂଟିରେ ନାହିଁ ତା' ଆହାର
ଆଜି ସେ ଅଟେ ସର୍ବହରା ।
ଚଢ଼େଇରେ । ତୋର ସେ ଚଳମାନ ଛବି
ହେଲାଣି ନିଶ୍ଚିହ୍ନ
ତୋର ସେ ଲୋଭନୀୟ ରୂପ
ଆଜି ଦିଶୁଚି ମଳିନ ।
ତୋର ସମ୍ଭାବ୍ୟ ଓ ଭବିଷ୍ୟତ
ସବୁ ଅଂଧକାର

ତୋର ଅତୀତ ଓ ବର୍ତ୍ତମାନ
ଏବେ ଖାଲି କରେ ହାହାକାର
ଉଠିବାକୁ ଉପରକୁ ଓ
ଲୁଚିଯିବା ପାଇଁ ସବୁଦିନ-
ଚଢ଼େଇରେ ! ଫଟା କପାଳକୁ
ତୋର ବୃଥା ଏ ଜୀବନ ।

ଭଲ ଲାଗୁଛି ଦେଖିବାକୁ
ଯାହା ଯାହା ଘଟିଯାଉଛି
ନିର୍ବାକ୍, ନିସ୍ତେଜ ଭଂଗା ଦେହରେ
–ସବୁଠାରେ ।
ପାଖରେ ପଇସା ନାହିଁ ତ
ଚୋରୀ କର, ଧପାଧପି କର
ନାହିଁ ପାରୁଛୁ ଯଦି
ଏକାବେଳକେ ଓପାଡ଼ିଦେ
ନିର୍ମୂଳ କରିଦେ
ଯେତେ କଅଁଳ ଛନଛନ
ଜୀବନ ଗୁଡ଼ାକୁ ।

ମନରେ ସାହସ ନାହିଁ ତ
ଲୁଚ ଯା' ଅନ୍ଧାର କୋଠୀରେ
ଦେ ପେଲିଦେ ଦି' ଚାରିହଜାର
ଭଡ଼ାଟିଆଙ୍କୁ –
ଖତମ୍ କରିଦେ ଉତ୍ପାତିଆ
କେଇଟାଂକୁ ।
ମୁଂଡରେ ମିଜାଜ୍ ନାହିଁ ତ
କିଛି ପରବାୟ ନାହିଁ
ବୁଲିଆ ଘେରାଏ ଚାରିଆଡ଼ୁ –
ଅଂଟି ପୁରେଇ ଦେଇଦେ –
ଏଥର ବୁଦ୍ଧି
ତାଂକର ଆଉ କାମ ତୋର ।

•••◆•••

# ଅୟସ୍‌କାଂତ

ସିଏ ଏକ ନୀଳ ନଈ
ମିଳନ ଜୁଆରରେ ଭରା
ପ୍ରୀତି ଫୁଲ ଗାଲିଚା ଉପରେ
ଅଳସର ହାଇମାରି
ଛୋଟ ଛୋଟ ଭାଷାଂକର
ସାବ୍‌ଜା ଉପତ୍ୟକାରେ ତାରୁଣ୍ୟର
ଧକ୍‌କା ଦେଇ ଆଗକୁ ମାଡ଼ିଚାଲେ
ଦଳିଚକ୍‌ଚି, ମାଡ଼ି ମକ୍‌ଚି
ଯେତେ ପାପ ଯେତେ ଅହଂକାର –
ଖିଆଲି ସ୍ମୃତିର ।

ସିଏ ଏକ ନୀଳ କଇଁ
ଢଳଢଳ ପାଖୁଡ଼ା ମେଲାଇ
ରୂପମୁଗ୍‌ଧ ଗରାଖଂକୁ
ଖୋରାକ ଯୋଗାଇ – ରାତିର
ପରଳ ଚିରି ହସେ କିରିକିରି
ଦିନର ପଣତ ତଳେ କାଂଦେ
ରାହା ଲେଉଟାଇ – ବଇଶାଖି
ଝାଂଜି ସହି – ଶ୍ରାବଣର ବର୍ଷା ଖାଇ
ଫଗୁଣର ବସଂତ ଦେହରେ
ନାଉଡଂକ ସାପପରି
ଛଂଦି ହୁଏ – ମନ ନିଏ ।

ସିଏ ଏକ ନୀଳ ସର୍ପ
ନୀଳ ନୀଳ ମଣିର ଆଧାର
ସାତ ତଳ ପାଣିତଳେ ଘର

ଅଭିଆଡ଼ି ଝିଅର ପରଶେ
ନିଦ ଭାଙ୍ଗେ – କଦଂବ ମୂଳରେ
ଶୁଣେ ବଇଁଶୀର ସୁର–
କାଳିଆ କାହ୍ନୁର – ମଶାଣି
ଭୂଇଁରେ ସବୁଦିନ ପାଇଁ
ହଜିଯାଉଥିବା ବିକଟ ଚିତ୍କାର–
ପବନର–ସମୟର ତାଳେତାଳେ
ବର୍ତ୍ତମାନର ପଖଜ ବଜାଇ
ସରଳ ନିଷ୍ପାପ ହୃଦେ
ଆଶାର ଡିଂଡିମ ପିଟେ–
ଅବିବେକୀ ପରାଣର ରୂପେଲି ପର୍ଦ୍ଦାକୁ
ଖିନ୍‌ଭିନ୍ କରେ
ବିଷାକ୍ତ ଗରଳ ଦେଇ–
ବାସୁକୀର ଦାୟାଦ ସେ
କା'ର ମନେ ଆନଂଦର ଫଲ୍‌ଗୁ
ପୁଣି କାହା ପ୍ରାଣେ
ଯଂତ୍ରଣାର ଆଣେ ସାହାନାଇ ।

ସିଏ ଏକ ନୀଳ ଇନ୍ଦ୍ର
ନୀଳ ନୀଳ ଜୋଛନା ଭଂଡାର
ନୀଳ ଆକାଶରେ ସାରା ରାତି ଉଜାଗର
ପ୍ରୀତିର ମଶାଲ ଜାଳି
ହସର ଖିଆଲ ଖେଳି
କଳା କଳା ବାଦଲ ଉହାଡ଼େ
ଖେଳେ ଲୁଚକାଳି
ନିଛାଟିଆ ନିରିଜନ ଦେହେ ତା'ର
କିଏ ଇଏ ଅତି ଆପଣାର
ଚାରିଆଡ଼େ ବୁଲେ ଦେଖି
ଲଗାଇ ଭେଲିକି – କେଉଁ କୁହୁକ

ରାଇଜ୍ଜୁ ଆସିଛି ସେ ଛୁଟି
କିଏ ଜାଣେ ଆଖି ଆଢୁଆଳେ
ତା'ର ସବୁ ନେବ ଲୁଟି ।
ପ୍ରଭୁତ୍ୱର କରିବା ଜାହିରି
ଭରା ଯଉବନ ତା'ର
କରିବ ସେ ନାରଖାର
ସ୍ୱର୍ଣ୍ଣ କୁରଂଗୀର ବେଶେ
ଭୁଲାଇବଂ ମନକୁ ସେ
ଚାରିଆଡ଼େ ପଡ଼ିଯିବ ହୁରି
କିଏ ସିଏ କଲା ତା'ର
ମନ ସୀତା ଚୋରି ।

ସିଏ ଏକ ନୀଳ ପରୀ
ନୀଳ ନୀଳ ଡେଣା ଝାଡ଼ି
ଉଡ଼େ ଥିରିଥିରି
ନୀଳ ଆକାଶର ବୁକୁ ଚିରି
ଚଟ୍‌କିନା ଆଲୁଅରୁ ଦେଖା ଦେଇ
ଲୁଚିଯାଏ ପୁଣି
ଦୂର ପାହାଡ଼ ସେପଟୁ
ବେଳେବେଳେ ଶୁଣାଯାଏ ଗୀତ ତା'ର
ସେ ଏକ କରୁଣା କାହାଣୀ
ମନ ନିଏ କିଣି
ଦରଫୁଟା ସଜ ଗୋଲାପର
ପାଖୁଡ଼ା ମହଲ୍ ସବୁ ପଡ଼ଂତି ଝାଉଁଳି
ବେପଥୁ ରାଗିଣୀ ତା'ର ପଥହୁଡ଼ି ନିଷ୍କୁପ ଦେହରେ
ପଡ଼େ ମାଡ଼ମାଡ଼ି ।

ସେ ଯେଉଁ ନୀଳ ନଈ
ତା' ଦେହରେ ଅସଂଖ୍ୟ ଲହରୀ
ଲହରୀର ଧାରେଧାରେ

ମନଖୋଲି ହସିବାରେ
ଓସ୍ତାତ ସେ ନୀଳ କଇଁ
ନୀଳ ସର୍ପ ଛଂଦି ହୁଏ କଇଁ ନାଡ଼େ
ମୁଂଡ ଗୁଂଜେ ପାଖୁଡ଼ା ଦେହରେ
ସାପର ପାଟିରେ ବେଂଗ ଛାଡ଼େ ରଡ଼ି
ପୁଣି ବେଂଗର ପାଟିରେ ପୋକ
ହୁଏ ଭିଡ଼ିମୋଡ଼ି
ନୀଳ ଇନ୍ଦ୍ର ଦେଖାଦିଏ
ନୀଳ ନଈ ଲହରୀ ଭିତରେ
ନୀଳ ପରୀ ଦେଖିନିଏ ମନଖୋଲି
ଆଜିର ସଂସାର
ବାରଂବାର



## ଲାଲ୍‌ଟୁ ପାଇଁ

ତୁ ଚାଲିଗଲୁ ସେଦିନ
ତୋ ଯିବା ସାଂଗେ ସାଂଗେ ତାରାଗୁଡ଼ା ବି
ଜହ୍ନକୁ ଏକୁଟିଆ ଛାଡ଼ି ଦେଇ
ଓଲ୍ହେଇ ଆସିଲେ
ନିଶବ୍ଦ ନିଭୃତ କୋଠରୀ ମଝିକୁ
କଷି ଭୂଆଷୁଣୀ କଂଦି ଘରେ ଯାକୁ ତାକୁ ନୁଚିଗଲା ପରି ।

ବାଂଧି ରଖିବାକୁ ତତେ
ଜଖ୍ମି ହାତଟା ମୋର ଅଟକି ରହିଲା
ଆଗକୁ ବଢ଼ାଇଲେ ହାତ
ମୁଠାମୁଠା ପାଉଁଶ ଅଂଗାର ଭିତରେ
ନିଆଁର ପ୍ରଲେପ
ଅବଲୁପ୍ତ ଶିଖାର ଉପରେ
ବିକ୍ଷୁବ୍ଧ ମନର ଇଂଗିତ ।

ନେଂବୁଗଛ କଡ଼ ସେଇ ଗୋହିରୀ ଭିତରୁ
କଳା କିଟିକିଟି ଗାଡ଼ିଟା ଯେବେ ବାହାରିଲା
ଅସତ୍ୟ ସହର ଉପରେ ଶେଷ ଇଚ୍ଛା ଯେବେ
ମୋଟାମୋଟି କହିବାକୁ ଗଲେ
ସଂଭାବନାର କବାଟ ମେଲିଲା
ଡରିଗଲି ମୁଁ
ଆଶଂକାରେ ଡୋଳା ମୋର ନେଉଟି ପଡ଼ିଲା ।

ଯେ ଯେଉଁ ଯଂତ୍ରଣାର ଛକା ପଞ୍ଝା ଖେଳ
ଆବୋରି ପ୍ରିୟାକୁ ମୋର ହଇରାଣ
ହରକତ କଲା
ପବନରେ ବାଇଆ ବସା ଦୋହଲିଲା ପରି

ଅବୁଝା ମନରେ ଆବେଗ ହାବୁକା ମାରିଲା
ଖିନ୍‌ଭିନ୍ କରି
ସଉଖିନ୍ କାଚଘର ଭାଂଗି
ଶେଷକୁ ସେ
ପଦାକୁ ବାହାରି ଆସିଲା ।

ଆତୁର ଆଖିରେ ତା'ର ଆଜି ପଡୁନି ପଲକ
ପ୍ରଜାପତି ହୋଇ ଫୁଲରେ ସେ ଖୋଜୁଛି ମହକ ।
କେତେବେଳେ ଦରୋଟି ହସର ଗଜରା ତ
ପୁଣି ଖୋଲି ଦେଉଚି ବେଳେବେଳେ କାନ୍ଦର ପସରା ।
ବାଂଧିଦିଅ ପ୍ରିୟା ତାକୁ ସ୍ନେହର ଡୋରିରେ
ପଦାକୁ ଛାଡ଼ନି ତାକୁ ଖରାବେଳେ
କଂଟାଖାଇ ଡାଆଣୀଟା ବୁଲୁଚି ପଦାରେ ।



## ସେଦିନ ମୋ ଆସିବା ବାଟରେ

ସେଦିନ ମୋ ଆସିବା ବାଟରେ
ଚାହିଁ ରହିଥିଲା ପ୍ରିୟା
ଗାଧୁଆ ତୁଠରେ ।
ଗହଗହ ସବୁ ଆଖି ଫାଙ୍କେ
ଲୁଚିଯାଇଥିଲା ରାଶିରାଶି ସ୍ନେହ
ଉନ୍ମାଦ ଓ ଆବେଗରେ ଭରିଥିଲା ଦେହ ।
ଓଠର ବିଲରେ ତା'ର ଫୁଟିଥିଲା
ନାଲି ନାଲି ମନ୍ଦାରର କଢ଼ି
ଅଳସ ଦେହରେ ଯନ୍ତ୍ରଣାର
ନୀଳରକ୍ତ କେବେକେବେ
ଟୋପାଟୋପା ପଡୁଥିଲା ଝଡ଼ି ।
ଯଉବନ ଜୋଛନା କୁଆରେ
କୁଡୁବୁଡୁ ହୋଇ ପ୍ରିୟା ମୋର
ବସିଥିଲା ସମ୍ମୋହିତ ହୋଇ
କେବେ ମୁଁ ଆସିବି ତା' ପାଖକୁ
ପୁଣି ଥରେ ସେହିବାଟ ଦେଇ ।

ମୁଁ ଆସିବା ପରେ ପରେ
ମୋର ହାତ ଓଠ ଧରି
ଆନନ୍ଦରେ ଉଠିଲା କୁରୁଳି
"ପ୍ରିୟ ମୋର ଅତି ଆପଣାର"
ବୋଲି କଲା ସଂବୋଧନ
ଆତୁର ଆଖିରେ ପ୍ରୀତିର ଇସାରା
ଦେଲା ଘନଘନ ।
ବାରିହେଲା ନାହିଁ ମୁହଁ ତା'ର
ପ୍ରଣୟର ଝାପ୍‌ସା ଆଲୁଅରେ

ଖାଲି ଜାଣିଲି ଯା' ମନ ତା'ର
ବୁଲୁଅଛି କାହା ସଂଧାନରେ ।
ପିଇଗଲା ମନଭରି ନଈର ଦେହରୁ
ମେଂଟିଗଲା ଜୀବନ ପରାଶ
ନୁହେଁ ସିଏ ନାରୀ
ସିଏ ଏକ ପ୍ରଗଲ୍‌ଭା କିଶୋରୀ
ବଇଶାଖୀ ଝାଂଜି ଅବା
ଶ୍ରାବଣର ଲଂବା ଲଂବା ନିଟୋଳ ବତାସ ।

ଗୋରା ତକତକ ଚଂପା କଢ଼ି
ହାତ ପାପୁଲିରେ ଯେବେ
ରୁକ୍ଷ ଟାଆଁଶିଆ ନିଛକ
ମୁହୂର୍ତ୍ତ କେତୋଟି ମିଶିଗଲା
ନିଥର ଦେହଟା ତା'ର
ଅଭଂଗା କଂଢେଇ ପରି ଉଲୁସି ଉଠିଲା
ହସିଲା ସେ
ଦର ଫୁଟା ସଜ ଗୋଲାପ କଳିକା
ଉଛୁଳିଲା ଯମୁନାର କୂଳ
କଦମ୍ବ ଦେହଟା ତା'ର ଲାଗିଲା ହେମାଳ
ଖୋଜୁଥିଲା ମୁରଲୀର ସୁର
ଆଗେଇଲା ଯମୁନା କୂଳରେ
ରୁଣୁଝୁଣୁ ବଜାଇ ଘୁଂଗୁର ।



# ଚାରିଆଡ଼େ ବାଜୁଛି ନାଗରା

ଚାରିଆଡ଼େ ବାଜୁଚି ନାଗରା
ତୁ ଗୋଟେ କଳଂକିନୀ
ପାପର ପସରା
ଦେଖାନା ତୋ ମୁହଁ
ଦାଣ୍ଡ ଦୁଆରକୁ
ରାସ୍ତାଘାଟ ଚାରିଆଡ଼େ
ତୋ ନାଁରେ ଝୁଲୁଚି ପୋଷ୍ଟର
ଲାଗୁନି ସରମ ତୋତେ
ପଦାକୁ ଯିବାକୁ ?

ଏଡ଼େ ଖାନ୍‌ଦାନି ଘର ତୋର
ନାଁ ପକେଇଲୁ ।
ଏତେ ଖାଇ ପେଟ ପୁରିଲାନି ଯେ
ଭୋକକୁ ତୁ ସହି ନପାରିଲୁ ।
ବିଛା ମଂତ୍ର ନଜାଣି
ସାପ ଗାତରେ ହାତ ପୁରାଇଲୁ ।
ଏବେ ଯା'କୁ ଧରିଚୁ କୋଳରେ
ସାଇତି ରଖିବୁ ତା'କୁ
କେଉଁ ଯାଦୁଘରେ ?
ସିଏ ଆସିଚି କି ନାହିଁ
ଚାରିଆଡ଼େ ପଡ଼ିଲାଣି ହୁରି
ଆସିଗଲା ପରେ ଚାରିଆଡ଼
ପଡ଼ିବ ଉଛୁଳି ।

ହାତକୁ ଦି'ହାତ ହେବାକୁ
କିଆଁ ମନା କଲୁ
ଉପରେ କିଛି ନଜାଣିଲା ପରି
ଭିତରେ ନିଜକୁ ନିଜେ ଛୁରୀରେ ଭୁଷିଲୁ ।
ସେ ଯେଉଁ ବାଂଠୁରା ଟୋକାଟା
ବାବୁରି ବାଳ ଉଡ଼ାଇ ନିତି ଆସୁଥିଲା
ସିନେମାହଲ, ରାସ୍ତାଘାଟ, ପାର୍କ ଆଦି
ଯେଉଁଠି ଇଛା ସେଠି ଅଂଟାରେ
ହାତ ଦେଇ କେତେ ଗପୁଥିଲା
କୁଆଡ଼େ ଗଲା ଏବେ ସିଏ ?
କିଛି କରିବାର ନାଇଁ ଏବେ
ସିଏ ନ ଆସିବା ଯାଏ ।



## ବର୍ଷା ଆସିଲା ଉତ୍ତାରୁ

ଝିପିଝିପି ବର୍ଷାର ରିମ୍‌ଝିମ୍ ଡାକ
ପହିଲି ଆଷାଢ଼ର ବୁକେ
ନାଚୁଆଣୀ ଝିଅର ଗୋଡ଼ରେ ଘୁଂଗୁର
ରୁଣୁଝୁଣୁ ହେବା ପରି ଲାଗେ ।
ଦେହରେ ଆସେ ଶୀହରଣ
ମନରେ ଆସଇ ପୁଲକ
ନୂତନ ବର୍ଷାର ସ୍ୱାଦ
ଚହଟାଇ ଦିଏ ଗୋଲୋକ ଭୂଲୋକ ।

ସଜଳ କଜଳ ଭସାମେଘ କେତେ ଢାଙ୍କିଦିଏ
ଇଂଦ୍ରଧନୁର ସାତରଂଗ କିଏ ଆଂକିଦିଏ
ସାଧବ ବୋହୂର ନାଲି ଗୁଲୁଗୁଲୁ ଦେହ
ଭୂଇଁରେ ସାଉଁଟେ –
ନିରେଖେଇ ନିକୁଟେଇ ଦେଖିବାକୁ
ଭାରି ଭଲ ଲାଗେ ।
ଉତଳା ପତଳା ପବନରେ ଢେଉ ପିଟିହୁଏ –
ଥଂଡା କୋହଲା ପାଗଟା ଦେହକୁ ମଂଥିଦିଏ ।
ରାସ୍ତା କଡ଼ରେ କାଦୁଅ ହେଉଚି ପଚପଚ
ଅଂଧାର ଭିତରେ ବାରି ହେଉ ନାହିଁ
କାହାର ଏ ଦେହ କଳା ମଚମଚ
କିଚିରି ମିଚିରି ସଂଗୀତ ଗାନେ ମୁଖରିତ
କଂପୁଚି ମେଦିନୀ ଚାରିଆଡ଼େ ସୀମା ସରହଦ
ବର୍ଷାରାଣୀ ଆସିଚି
ସରମି ଲତା କହୁନି କଥା
ଲାଜେଇ ପୁଣି ଓଢ଼ଣା ଟାଣି
ମେଘର ଫାଙ୍କୁ ବର୍ଷୁଚି ଯେ ବର୍ଷୁଚି ।

ପ୍ରିୟାମୋ ଲେଖିଛି ଚିଠି
　　　　ତା'ର ହୃଦୟୁ ନିଗାଡ଼ି
ଟିକେ ଯିବା ଡେରି ହେଲେ ମୋର
　　　　ଯିବ ସେ ବିଗିଡ଼ି
ବର୍ଷାକୁ ଉପଭୋଗ କରିବାକୁ ମନ
　　　　ଚିଠିରୁ ଜାଣିଲି ଯାହା –
　　　　ସେ ଖାଲି ହେଲାଣି ଉଚ୍ଛନ୍ନ ।
ବହଳିଆ ନରମ ଶେଯରେ ସେ ଶୋଇ ଯାଇଥିବ
ତୁହାକୁ ତୁହା ବର୍ଷା ବର୍ଷି ଯାଉଥିବ
ଥମିଗଲା ପରେ ଉଠି ଦେଖୁଥିବ
ଦାଂଡ କବାଟ କେବେ ଠକ ଠକ ହେବ ।
　　ଅମୂଲମୂଲ ଆସିବ –
ଗୁମାନ କରି　　ମନକୁ ମାରି
　　ରୁଷିବ ସେ ଯେ ରୁଷିବ ।



## ତୁମର ସେ ଗୁମର ଟିକକ

ନିଭୃତ ମୋ କୋଠରୀକୁ
ଯେବେ ଆସିଥିଲ ଏକାଏକା
ପୁନେଇର ଜହ୍ନ ଭଳି
ଦିଶୁଥିଲ ତରକା ତରକା ।
ଚୁପିଚୁପି ପାଦ ତଳେ ଗାଉଥିଲ
ପଖଜର ନୀରବ ସଂଗୀତ
ଭୟ ଆଉ ସଂକୋଚର
ଦର୍ଜା ପାର ହୋଇ
ଦେଉଥିଲ ପ୍ରୀତିର ଇଂଗିତ ।

ଅଝଟ ହେଲି ମୁଁ ତୁମ
ଅବରୁଦ୍ଧ କାରାଗାରେ
ବଂଦିନୀ ଦେହଟା ପାଇଁ ।
ଖୋଜି ବୁଲିଲି ମୁଁ
ସଂଧାନୀ ଆଖିରେ
କାହିଁ ଗଲା ମୋ
ସୁବର୍ଣ୍ଣ କଂଢେଇ ।
ନାଚିନାଚି ବେଦମ୍ ଖୁସିରେ
ପୁହାଇ ଦେଲି ସାରା ରାତି
ନିରୋଳା ଦେହରେ ତୁମ
ଆଂକି ଦେଲି ସ୍ୱପ୍ନର ରେଖାକି ।

ରାତି ପାହିବା ପୂର୍ବରୁ
ଯିବାକୁ ବାହାରିଲ ଯେବେ
ଲାଜରେ ଜଡ଼ସଡ଼ ହୋଇ
ଦୂରରେ ଦେଖିଲ ସେ

ଭୟଙ୍କର ରୂପ
ଅପବୀଜ ନାଁ ତା'ର
ଆସୁଥିଲା ଡେଂଗୁରା ବଜାଇ ।
ଭାବୁଛି ଏବେ ମୁଁ
ସେଦିନ ସେ ମୂହୁର୍ତ୍ତର ଶେଷ
ତୁମର ସେ ଭାବ ବିନୋଦିଆ
ଦେହ, ମନ, ଧୈର୍ଯ୍ୟ ଓ ସାହସ
ଏଡ଼େ କଦରିଆ ତୁମେ
ସବୁରି ଆଖିରେ ଧୂଳି ଦେଲ
ମୁଁ ସିନା ଜାଣିଛି
ତୁମର ସେ ଗୁମର ଟିକକ
ସମାଜ ଆଖିରେ
ତୁମେ କିନ୍ତୁ ଭାରି ଭଲ ।



## ଶତାବ୍ଦୀର ଶୋଷ

ସକାଳର ନରମ ହାତ ପାପୁଲିରେ
ଛୋଟ ବଡ଼ ଅନେକ ବାସ୍ନା ଫୁଲ
ଅଝଟ କରନ୍ତି ।
ବେକୁପ୍ ମନରେ ନୂଆ ନୂଆ ଆଶାର
ତପ୍ତ ବୈତରଣୀ ଝଲସେ ।
ରକ୍ତ ନଦୀର ଆର ପାଖେ ଥିବା
କୁହୁକ ଦ୍ୱୀପର କାଉଁରୀ କାମଚଂଡୀ
କାମାକ୍ଷା ଦେବୀଂକ ପାଖରେ
ସମର୍ପଂତି – ଅତି ସଂତର୍ପଣରେ
ଛାଡ଼ିଯାଇଥିବା କିୟଦଂଶ ଚଢ଼େଇ ଦେଇ
କହନ୍ତି ଜାଣିଛ – ସିଏ କିଏ ସେ ?
ଇଏ କିଏ ସେ ?

ଜୋର ଜବରଦସ୍ତ ଲଦି ଦେଉନି
କିଏ ଉପରେ ଯେ ଏତେ
ବ୍ୟସ୍ତ ହେଉଛ ? ଏକୋଇଶ ଦିନ
ଅଧିଆ ପଡ଼ିବା ପରେ ମୃତ ସଂଜିବନୀ
ପିଇଛ ନା ଯାହା ସେଇଆ ରହିଛ ।
ଧରି ମାରିବା ଯାହା ବାଂଧି ମାରିଲେ
କ'ଣ ଭିନ୍ନ
ଗୋଦାମ ରଦି ଜିନିଷରେ କା'ର ବା ଥାଏ ମନ ।
ପୋକରା ନାକରା ଆଜ୍ଞେ ବାଜେ
କଥାରେ ଅଦ୍‌ଭୂତ ପରିବର୍ତ୍ତନ – ସବୁଦିନ ।
ଷାଠିଏ ପଉଟି ଅନ୍ନ

ଭୋଗ ରାଗ ଅନେକ ଅନେକ
ବିସ୍ତୃତ ଓ ବିକ୍ଷିପ୍ତ ଚିନ୍ତାର ବୁକୁରେ
'ହାଅନ୍ନ'ର ଡାକ
କଂପିତ ଅଧରରେ ମଧୁର ଚୁଂବନ
ଶୁଖିଲା ଫୁଲରେ ଅବା ଭ୍ରମର ଗୁଂଜନ
ଅଳ୍ପକିଆ ଭାବନାର ମୃଦୁ ସମୀରଣ
ଆଣେ ବୀର ଭୋଗ୍ୟା ବସୁଂଧରା ଅଂଗେ
ନିବିଡ଼ କଂପନ ।



## ଅସଲି ମାପର ଢାଞ୍ଚା କରିଦେ ନକଲି

ଅଳସ ଆଖିରେ ମର୍ମାନ୍ତକ ଚାହାଣୀ
ଆତୁର ଆଖିରେ ଦଲକାଏ
ଦୋଦୋ ଚିହ୍ନା ବିବରଣୀ
ଛତୁ ଫୁଟିଲା ପରି ଫୁଟିଚି ।
ରାତ୍ରିର ତମସା ତଳେ
ପାହାଂତିଆ ତାରାର ଗହଳେ
ଖେଳୁଚି ସେ ଯେ ଖେଳୁଚି ।।

ସେ ଯେ ଅନେକ ତୁଂଡର ହସ
ନିଝୁମ ରାତିର ସାଥୀ
ଶତାବ୍ଦୀର ଅୟୁତ ପ୍ରାଣର କ୍ଷୁଧା ।
ବ୍ୟଂଗ ବିଦ୍ରୂପର ଆଙ୍କାମାଙ୍କା
ବ୍ୟଭିଚାର ଓ ଅସଂଭବ
ଚିଂତାର ମସୁଧା ।।

ଜୀବନ ଆଇନା ତଳେ
ମୃତ୍ୟୁର ସହର
ଅପାଙ୍କ୍ତେୟ ଧାଡ଼ିଧାଡ଼ି
ଧୋବଲଗା ଲୁଗାର ରୋଷଣୀ
ମହୁଆ ବନରେ ଅବା
କଂଦର୍ପର କାମବାଣ ବିପର୍ଯ୍ୟସ୍ତ
ହାଲ୍‌କା ଭାବରେ ଦେହରେ
ମନରେ ପଡୁଅଛି ଛିଡ଼ି ।।
ଦଲକାଏ ଝାଂଜି ପିଟୁଅଛି
ଡେଣା ତା'ର ବୟସର
ଗୋଲାପି ବୁକୁରେ –

ରକ୍ତଚିତା ମାଖି ହୋଇ କପାଳରେ
ଗାଉଛି ସେ ବିଜୟର ଗାଥା
ନରମ ଗଳାରେ ।।
ଦେଖିବାକୁ ପରକୀୟା ପ୍ରୀତି
ଓହ୍ଲାଇ ଆସିଚି
ସତେ ଅବା ସ୍ୱର୍ଗ ଅଧିପତି
ବୁଲୁଅଛି ନଗରେ ନଗରେ ।
ବେଦମ୍ ହେଲାଣି ତଉଲି ତଉଲି
ପାପ ପୂଣ୍ୟ ସ୍ନେହ ଶ୍ରଦ୍ଧା ଅଛି
ଯେତେଯେତେ ଭଲମଂଦ
ନିକିତି ଦେହରେ ।।

ସେ ତ ଗୋଟେ ଅସଲି
ମାପର ଢାଂଚା ଆଣିଛି ସାଂଗରେ ।
ବାଦ୍ ଯାଉନି କିଏ ହେଲେ
ତା'ର ସେ ସଂଧାନୀ ଆଖିରୁ
ଚୁପ୍ ରହିଯା ଏଇ ଘଡ଼ିକ ଟିକିଏ
ବୁଲିବୁ ତୋ ମନଇଚ୍ଛା
ସିଏ ଚାଲିଗଲା ପରେ ।।



## ଭିନ୍ନ ପୃଥିବୀ

ପେଟ ଚିରିଦେ-
ରକ୍ତମଖା ଛୁରୀରେ
ଦେଖିବୁ
ନିରନ୍ନ, ନିର୍ଲିପ୍ତ ଅଧଂକାର୍‌ ।

ମୁହଁ ଖୋଲିଦେ-
ମଧୁର ଭାଷାରେ
ଶୁଣିବୁ
କ୍ଷୁଧା, କ୍ଷୋଭ ଓ ନିର୍ବାଦ ଝଂକାର ।

ଆଖି ମେଲିଦେ –
ଯଂତ୍ରଣା ପରଳ ଟାଣି
ଜାଣିବୁ ଯେତେ
ଘାତ, ପ୍ରତିଘାତ ବିକ୍ଷୁବ୍‌ଧ ମନର ।



# ଏମିତି କେତେଟା ଦିନ

ଏମିତି କେତେଟା ଦିନ କଟିଗଲା
ଆବେଗର ସୁବର୍ଣ୍ଣ ଢେଉରେ
ଓଲଟା ବୁଝାମଣା ତାମସା ଚାଲିଲା
ଛକାପଞ୍ଝା ନରମ ଦେହରେ ।

ସଉଖୀନ କାଚଘର ପରଦା ଆଡ଼େଇ
ଢଳଢଳ କପୋତୀ ଆଖିରେ
ଯେବେ ଚାହିଁଲି ମୁଁ ତାକୁ
ଡରିଗଲି । ଭୟାତୁର ଆଖିର ପଲକ
ଝାପ୍‌ସା ଆଲୁଅ କାଂଥରେ ନେସି
ହୋଇ ପଡ଼ିଲାଣି – ସତେ କ'ଣ ତାକୁ କିଏ
ଓଷଦ କଲାଣି ?

ଶବ୍ଦ ବେଶି ନିଶବ୍ଦ ସହରେ
କରିତ୍‌କର୍ମା କିଏ ଏହି ଶବ୍ଦଙ୍କର ?
ରଣିଫୁଲିଆ ଜହ୍ନ ନା
ଦପ୍‌ଦପ୍ ଜଳୁଥିବା ତାରାର ଫସଲ ?
ଘୋଡ଼େଇ ପଡ଼ିଥିବା ମେଘର
ଢାଂକୁଣୀ ଭଳି
ଆଡ଼େଇ ଆସିଥିବା ନଈର ଅଂଧ ମୁହାଣୀ ପରି
ଏସବୁ ଶବ୍ଦଂକର ଜନ୍ମ କେଉଁଠାରୁ
କେଉଁ ଆଦିମ କାଳରୁ
ଛବିଳ ମଧୁ ବର୍ଣ୍ଣବୋଧ ଭିତରୁ
କିଂବା ଡିସ୍‌କୋ ନାଚର ଆସର ଦେହରୁ ?

ଏମିତି କେତେଟା ଦିନ କଟିଗଲା
ରକ୍ତର ବାଲିବଂଧ ପରେ
ନାଚିବାର ତାଳେ ତାଳେ
ରୁଣୁଝୁଣୁ ନୂପୁର ସାଂଗରେ
ବଂଚିବାର ମୋହ ତୁଟିଗଲା
ବୈରାଗ୍ୟର ଟାଣୁଆ ଚିତାରେ
ଉଭାହେଲା ରକ୍ତମଖା ଛୁରୀ
ଝାଡ଼ିଦେଲା ଗଛରୁ ଦେହରୁ
ଯେତେ କଷି ଯେତେକ ଗୋଟମା
ହତ୍ୟାକଲା ମନଇଚ୍ଛା
ଯୁଆଡ଼େ ପାଇଲା ଯାହା
ଏମିତିକି ଥିଲେ ଯେତେ
ଅକାମି ନିକମା ।



## ଅଜାଗା ଘା'

ଦିନ ରତରତ ହେଉଥିଲା
ସେ ଆସିଗଲେ
କିଛି ପଚାରିବା ଆଗରୁ ସେ
ତାଙ୍କ ପରିଚୟ ଦେଲେ ।
କହିଲେ –
ତାଂକୁ ଶୀଘ୍ର ଟିକେ ଲୁଚେଇ ଦେବାକୁ
ସାତ ତାଳ ପାଣି ଭିତରେ ଥିବା
ସିଂଦୁର ଫରୁଆ ଭିତରେ
ଭଅଁରଟି ଭଳି ।
କିଂବା ଘମାଘୋଟିଆ ମେଘ ତଳେ
ଜହ୍ନ କିଛି ଦିନ ପାଇଁ
ଲୁଚିଗଲା ପରି ।

ତାଂକର ସେ ଭୟାତୁର ମୁହଁ
ଅବାସ୍ତବ ମନର ସଂଦେହ
କିଛି କ୍ଷଣ ପରେ ଲିଭିଗଲା
ବହୁ ପଚରା ଉଚରା ପରେ
ସେ ବଖାଣି ବସିଲେ
ଯାହା ଯାହା ସବୁ ଘଟିଥିଲା ।

ସେ ଗୋଟେ କଅଁଳିଆ
ଜୀବନର ଡଂକ ମୋଡ଼ି
ଦୁନିଆ ଆଖିରେ ଧୂଳି
ଦେବାକୁ ଚାହାନ୍ତି
ତାଂକ ହୃଦୟର ସମସ୍ତ ମମତା

ତାଂକ ଦେହର
ସଳଖ ସୁଂଦର ରାସ୍ତା
ଯିଏ କିରିଛି ନଷ୍ଟଭ୍ରଷ୍ଟ
ତା'ର ଶେଷ ପରିଣାମ
କେବଳ ମୃତ୍ୟୁର ଇନାମ ।
ହୃଦୟ ତାଂକର ଫାଟି ପଡୁଛି
ବ୍ୟଥା ଓ ବେଦନାରେ
ମନ ତାଂକର ଭାଂଗି ପଡୁଛି
ଆଜି ନିଃସହାୟତାରେ ।
ଯାହା ଠାରେ ଥିଲା ତାଂକ
ଆଶା ଓ ବିଶ୍ୱାସ
ସ୍ନେହର ପ୍ରାଚୁର୍ଯ୍ୟ ତଥା
ହସଖୁସି ଥଟ୍ଟା ପରିହାସ
ତା'ରି ଜୀବନର ଶେଷ
ହେଲା ତାଂକ ଅଂତିମ ପ୍ରୟାସ
ଦୋଷ ତା'ର
ତାଂକ କହିବା ଅନୁସାରେ
ଅଜାଗା ଘା'ର ସମାନ ।

ସଂକ୍ଷେପରେ ସେ ଏତିକି
କହିଲେ–
ସେଦିନ ତାଂକର ଅନୁପସ୍ଥିତି
ଗୋଟେ ଅବଚେତନ ମନରେ
ନୂତନ ଆଲୋକର
ସ୍ୱାଦ ଦେଇଥିଲା ।
ପୁଣି ଠିକ୍ ସମୟରେ
ତାଂକର ଉପସ୍ଥିତି

ଗୋଟେ ଅତୁଆ ସୂତାର
ଖିଅ ଖୋଜିଥିଲା ।
ଖିଅ ଖୋଜି ପାଇବା ପୂର୍ବରୁ
ସୂତାଗଲା ଛିଡ଼ି
ଗୋପନ ରଖିବା ପୂର୍ବରୁ
ସବୁକଥା ଆସ୍ତେ ଆସ୍ତେ
ଆସିଲା ବାହାରି ।



## ନିଃସଂଗ ପଦାତିକ

ତୁମ ମନ ସାମିଆନା ତଳେ
ଘୁରି ବୁଲିଲି ଯେବେ ମୁଁ
ଦେଖାଇଲ –
ଅସ୍ତମିତ ସୂର୍ଯ୍ୟର ଆଲୋକ୍ ।( ୧ )

ତୁମ ଆଖି ଦରୋଟି ଭାଷାରେ
ଗୀତ ପଦେ ଗାଇଲି ମୁଁ
ଲେଖିଦେଲ –
ଭୂର୍ଜ ପତ୍ରେ ବ୍ୟର୍ଥତାର କବିତା ଅନେକ । ( ୨ )

ତୁମ ଦେହ ଇଲାକାର ସରହଦ ଡେଇଁ
ଆଗକୁ ଚାଲିଲି ଯେବେ ମୁଁ
ହେଲି –
ନିଃସଂଗ ପଦାତିକ । (୩)



## ଗଳି

ମାନ୍ଧାତା ଅମଳରୁ ଯେଉଁ
ଗଳିଟା ପଡ଼ିଛି
ତା' ପିଠିରୁ ଗୋଧିଚମଡ଼ା ଛାଡ଼ିଲା ପରି
ଛାଡ଼ିଲାଣି ଅନେକ ପରସ୍ତ-
'ବହଳିଆ ଅଂଧକାର ଓ
ବୁଦ୍ଧି ପରଖୁଥିବା ମିଜାଜ୍ ସମସ୍ତ ।

ଧୀମେଇ ପଡୁଥିବା ସରୁ ରାସ୍ତା ପରେ
ନନ୍ଦଘସ ହେଉଥିବା ଲୋକବାକ
ସବୁରି ମନରେ-
ଆଶା ଓ ଉତ୍‌କଂଠାର ଢେଉ
ଚିଟିକିଟିଆ କଳା ମଚମଚ ଦେହରେ
ବୁହେ ପାଉଡ଼ର ମାଖି ସୁବାସିତ
ଖିଲି ପାନେ ପାଟି ନାଲି କରି
ଅଭିମାନୀ ଗଳିଟି କହେ-
"ଏମିତି ଦିନ ମୋର ଯାଉ ।"

ବତୀ ଖୁଣ୍ଟ ଅଗର ସେ ବତୀସବୁ
ମହଳଣ ପଡ଼ିଲାଣି
ଗାଧୁଆ ତୁଠରେ ମାଇପିମାନଙ୍କ ମେଳ ଯମିଲାଣି
ଶୁଭ ଶଙ୍ଖ ସାହାନାଇ ବାଜିଲାଣି
କାହା ଆଗମନେ-
କିଏ ପୁଣି ବିଦାକି ନେଲାଣି ।
ମୁତଫର୍କା ପଡ଼ିଛି କି ଏଠି ?
ସମସ୍ତେ କହୁଚ ।
ହେଇଟି ଆସୁଚି ବୋଲି କହି ଚାଲିଗଲ
ସେ ଯେଉଁ ଛୋଟ ପିଲାଟି
ଇସ୍କୁଲରୁ ଫେରୁଥିଲା ବର୍ଷାରେ ଥରିଥରି

ତା' ହାତେ କହି ପଠାଇଲ
ବହୁତ ବହୁତ ମୋ ପାଖକୁ
ମୋ ଦେହ ପା' ବିଷୟରେ ଯତ୍ନ ନେବାକୁ
ନୂଆକରି ଗଢ଼ିବାକୁ ଶ୍ରୀଅଂଗ ।
ଯେଛା ତା କରିଚି ବୋଲି ଦେହ
ଆସିବାକୁ ନାରାଜ ହୋଇଛ
ସଜାଡ଼ିବାକୁ ବେଳ ନାଇଁ ମୋର
ବାଗେଇବାକୁ ଫୁରସତ୍ ନାଇଁ
ନିଦରୁ ଉଠିଲେ ଚା ପିଆଲାର
ଖୁଟ୍‌ଖାଟ୍ ଶବ୍ଦ
ଗଜଦଂତ ମଖମଲି ପଲଂକ ପରେ
ଅଳସ ଅନେକ ।
ଅଦ୍‌ଭୂତ ଅନାହତ ସଂଗୀନ ମୁହୂର୍ତ୍ତ
ସବୁ ଏକାକାର ହୁଅଂତି ଏଠାରେ
ପୋଷପୋଷ ସ୍ନେହର ଗଜରା ଭିତରେ
ପୋଖତି ମାଇପିକୁ ଉସୁଆସିଆ ଲାଗିଲା ପରି
ହସିହସି ଆଲିଂଗନ କରି
ବିଶ୍ୱାସରେ ବିଷଟିକେ ଦିଅଂତି ଅଧରେ ।

ପାରୁନି ଆଉ ଏଠି ରହି
ତତଲା ବାଲିରେ ଦେହ ମୋର, ମନ ମୋର
ଅସହ୍ୟ ଯନ୍ତ୍ରଂଣାରେ ଭରପୂର ।
ଏ ଯେଉଁ ବଣ ଥିଲା ସେଠି
ତା' ଉପରେ ଗଢ଼ିଲା ସୁଂଦର ପାଚେରୀ
ଆଜି ଦେଖ ସବୁ ଚୋର ସବୁ ବଦମାସ୍
ସବୁ ଠକ ସବୁ ସଇତାନ
ସେଠାରେ ପଇଁତରା ମାରଂତି କିପରି ।
ଆଖି ପିଛୁଳାକେ ଯୋଡ଼ା ଯୋଡ଼ା
ମଟର ଗାଡ଼ିର ଶବ୍ଦ
ସ୍ୱାଭିମାନ ଭାଂଗି ବଳଦ ଗାଡ଼ିର କେଁକଟରକୁ

ପଛରେ ପକାଇ
ଅନିଶ୍ଚିତ ଜୀବନ କେଇଟାକୁ
ସାଂଗରେ ଗୋଟାଇ
ରସରସିଆ ମନ ମତାଣିଆ ରେକର୍ଡ ବଜାଇ
ଛୁଟି ଚାଲିଯାଏ
ଏ ଦେହର ଶିରା ପ୍ରଶିରାରେ ଖାଲି
ଜାଗଇ କଂପନ
ପଥହୁଡ଼ି ବାଟ ଭୁଲି ଯେବେ କିଛି ହୁଏ
ସେମାନେ କହନ୍ତି ଖାଲି
"ଏଇତ ବିଧିର ବିଧାନ ।"

ହସର ଫରୁଆ ଭିତରେ ମୋତେ
ହସ କରି ରଖ–
ଫରୁଆ ଖୋଲିକି ମୋତେ
ନୂଆ କରି ଦେଖ ।
ନୂଆ ନୂଆ ଆଖି ମୋର ନୂଆ ଦେହ
ପରିଧିକୁ ଲାଗି ନୀଳ ଉପତ୍ୟକା
ସାବନା ସାବନା ଜୀବଂକର ବାସସ୍ଥଳୀ ଏକା
ବିସ୍ମୃତି ଗର୍ଭରେ ଲୀନ
ଲୀଳାମୟ ଅମୃତ ସଂତାନ ।
ବିଗତ ଦିନର ସ୍ମୃତି ପୋଡ଼ିଜାଳି ପାଉଁଶ
ସେଠାରେ ଜଳୁଚି ପ୍ରତିହିଂସା ଅଗ୍ନି ଲେଲିହାନ ।
ବିଶୃଂଖଳ ଜୀବନରେ ଶୃଂଖଳାର ବୋଧ
ଆଣିବାକୁ ଚେଷ୍ଟା କର
ଧରି ହସ୍ତେ ପ୍ରେମର ଆୟୁଧ ।
ବିଚ୍ଛୁରିତ ଆଲୋକରେ
ଭରି ଦିଅ ତୁମ ଚଲାପଥ
ସଂଧାନୀ ବୁକୁରେ ମାଖିଦିଅ
ଲଳିତ କସ୍ତୁରୀ ଅନେକ ।

••◆••

## ସମ୍ଭାବନା

ତଂନ୍ଦ୍ରାଭରା ଅଳସ ଆଖିରେ
କଅଁଳିଆ ଜହ୍ନର ଜୋଛନା ବୁକୁରେ
କିଏ ମୋତେ ଡାକେ ବାରବାର
ମୋ ଦେହରେ କାହା ଦେହ
ହୁଏ ଏକାକାର । (୧)

ଭିଜା ଭିଜା ସପନ ଢେଉରେ
ବହଳିଆ ଗଦି ପରେ, ଫୁଲ ଶେଯ ଘରେ
କିଏ ମୋତେ ଚାହେଁ ବାରବାର
ମୋ ମନରେ କାହା ମନ ମିଶି
କରେ ଆଶାର ସଂଚାର । (୨)

କା' ପାଦର ରୁଣୁଝୁଣୁ ନୂପୁର ନିକ୍ୱଣ
କା' ତୁଣ୍ଡରୁ ଉଚ୍ଚାରିତ ସ୍ନେହ ସଂଭାଷଣ
ବ୍ୟତିବ୍ୟସ୍ତ କରେ ମୋତେ ଆଜି
କ'ଣ କରିବି କହ –
ଥରେ ହେଲେ ଧରା ଦିଅ –
ସତ ହେଉ ଏ ସପନ
ନିଦ ଗଲେ ଭାଙ୍ଗି । (୩)



## ଆକଟ

ଧୂଆ ମୂଳା ଅଧୂଆ ମୂଳା
ସବୁ ସମାନ –
କିଛି ବାଛ ବିଚାର ନାହିଁ ।
ତୁ ଯାହା ସେଇଆ
ଯୋଉଠି ଥୋଉ ସେଇଠି ଅଛୁ
ଧର କହିଲେ ବାଂଧି ପକାଉଛୁ
ଉଁ, ତୁ ଟିକିଏ ହେଲେ ଜାଣିଥା
ଗୋଟାଏ ଢୋ କିନା ଥୋଇବି ।
ଧମକ ଦେଉଛୁ ନା–
ଟିକିଏ ବାଗକୁ ଆସିଲେ
ଖାଲି ନଚେଇବି ।

କାଲିକା ମେଂଚଡ଼ ଟୋକାଟା ତୁ–
ଏଡ଼େ ବହପ ଯେ – ମାନିବୁନି ?
ନିଶ ଦାଢ଼ି ରାଂପି ସେ ଯେଉଁ
ଦି'ଟା ନହକା ଟୋକା ତୋ ସାଂଗେ ବୁଲୁଥିଲେ
ତାଂକ ନାଁ ପଚାରିଲେ କହିବୁନି ?
ହଉ, ରଇଥା–
କୋଉ ପାଣି କୁଆଡ଼କୁ ଯାଉଛି ।
ପାରି ପାରି ଏଇଆ କରିବୁ
ମରିଯିବୁ କି କୁଆଡ଼େ ଚାଲିଯିବୁ ।
ବୋଉ କାଂଦିବ –
ନନା ବ୍ୟସ୍ତ ହେବେ
ପିଲାଏ ଅଝଟ କରିବେ

ଭାଇନା କାଇଁ ବୋଲି
ତୁ' ତ ବୁଝୁନୁ ସେକଥା–
ତୋ ବାଟ ବାଛିନେ ତୁ ।
ଖବରକାଗଜରେ
ତୋ ଖବର ଯେବେ ବାହାରିବ
ଲୋକେ କୁହାକୁହି ହେବେ
ଏ' ତ କିଛି ନୂଆ କଥା ନୁହଁ .
ଏମିତି ବହୁତ ଜିନିଷ ଦୁନିଆରେ ଘଟୁଚି –
ଘଟୁଥିବ ।



## କାହ୍ନୁ ବିରହରେ

ସିଏ ଚାଲିଗଲା ପବନରେ ଉପରକୁ
ଦାଗ ରହିଗଲା ଦେହରେ
ମନରେ, ଆଳାପ, ଆଲୋଚନା ସବୁଥିରେ ।
ବସଂତ ଯାଇଛି ଲିଭି
ଆସିଚି ଉଦାସ ଗ୍ରୀଷମ
ଫଗୁଣର ରଂଗଖେଳ ଯାଇଚି ଦୋହଲି,
ଜୀବନଟା ଲାଗଇ ବିଷମ ।

ହଠାତ୍ ଶୁଣିଲା ପରେ
ମୋ ଭିତରଟାରେ
ଯେତେ ଅନାବନା ଟୁକୁରା କାଗଜ ଥିଲେ
ଏକାଠି ହୋଇ ଘୁରିଘୁରି ଉପରକୁ ଗଲେ
ତା'ପରେ ମୁଁ ହେଲି ଶୋକାକୁଳ
ଉଜାଣି ଯମୁନା – ହେଲା ଆନମନା
ନ ପାଇଲି ତହିଁ ଥଳକୂଳ
ବେସାହାରା ଖୋଜି ବୁଲିଲି ମୁଁ
କାହିଁ ଗଲା ମୋର ଗୁରୁଂଡି ଗୋପାଳ ।

ଧୂଳିଘର, ବାଲିଘର ଗଲା ଭାଂଗି
ଗୋପଦାଂଡ ହୋଇଲା ନିଶୂନ
ମନ ମୋର ଅସଂଭାଳ ହେଲା
ନଶୁଣି ସେ ମୂରଲୀର ସୁର
କିଏ ସେ ବତାସୀ ଝଡ଼ର କର୍ତ୍ତା
କିଏ ବା ସେ ଅଂଧାରି ମୁଲକର ରାଜା –
ପୋଛିନେଲା ଏତେ ଶୀଘ୍ର
ଏଇ କଅଁଳିଆ ମନ –

ବିଛିଦେଇ ନିଖୋଜ ହେବାର ବାର୍ତ୍ତା
ଚାରିଆଡ଼େ ଗଗନ ପବନ ।
ମୁଁ କ'ଣ ଜାଣିଥିଲି ଏତେ
କମ୍ ଦିନରେ ସେ ଚାଲିଯିବ ବୋଲି
ମୁଁ କ'ଣ ଭାବିଥିଲି ଝଡ଼ ଆସିଯିବ
ଏତେ ଶୀଘ୍ର ଡେଂଗୁରା ନ ଦେଇ ।
ମୋ' ଠାରୁ ଶୁଣିବା ପରେ
ସମସ୍ତେ ଜ୍ଞାନ ହରାଇଲେ
କାଂଦିଲେ ବାହୁନି ବାହୁନି
ଷୋଳ ସହସ୍ର ଗୋପନାରୀ
ଆଉ ଯେତେ ଯେତେ ପ୍ରଗଳ୍‌ଭା କିଶୋରୀ
ସମସ୍ତେ ପରିଣତ ବଅସକୁ ଆହ୍ଲାଦିଲେ
ବେଗର ଲୁଣରେ କ'ଣ
ତିଅଣ ସୁଆଦିଆ ଲାଗେ ?
ଯେଝା କର୍ମ ଯିଏ ଆଦରି ବସିଲେ ।

କିଂତୁ ଏ କ'ଣ ?
ସାରା ଗୋପପୁରେ ଗୋଟିଏ କିଶୋରୀ
କରିଚି ମଉନ ବ୍ରତ
ଭୋକଶୋଷ ରୋଗ ବଇରାଗ
ସବୁକୁ ପାଶୋରି
ମନରେ ନାହିଁ ସରାଗ
ହୃଦୟୁ ଯାଇଚି ଲିଭି
ସବୁ ପ୍ରେମ ସବୁ ଅନୁରାଗ ।
କେବେ ଫେରିବ ସେ କାହ୍ନୁ
କେବେ ପୁଣି ଶୁଭିବ ମୂରଲୀ
ଗୋପଦାଂଣ୍ଡେ ବାଜିବ ନାଗରା
କଳା କାହ୍ନୁ ଆସିଗଲା ବୋଲି ।

•••◆••

## କୁହୁକ ଦ୍ୱୀପ

(ଏକ)

ଯେବେ ମୁଁ ଆସିଲି ଛାଡ଼ି
ମୋର ସେହି ଛୋଟିଆ ସହର
ସ୍ୱପ୍ନ ପାରାବାରେ ଭାସି ଭାସି
କାଗଜର ହୁଲି ଡଂଗା ପରେ
ବିତାଇଲି ଅନେକ ବିନିଦ୍ର ରଜନୀ
ନିର୍ଲିପ୍ତ ଦୃଷ୍ଟିରେ ଖୋଜୁଥିଲି
ସାମୁଦ୍ରିକ ଝଡ଼ ମଧ୍ୟେ
ସାଗରର ଉତ୍ତାଳ ତରଂଗେ
ନିଖୋଜ ଥିବା ସେହି ମାୟାବିନୀ ।

(ଦୁଇ)

ଡଂଗା ମୋର ଲାଗିଛି କୂଳରେ
ତଂଦ୍ରାଭରା ଆଖି ଖୋଲି
ଯେବେ ମୁଁ ଦେଖିଲି
ଛଂଦହରା ଅନେକ କବିତା
ସୁର ଦେଇ କଂଠରେ ଧରିଲି
ଦେଖିଲି ବ୍ୟର୍ଥତାର ବେଳାଭୂମି ପରେ
କା'ର ପାଦ ଚିହ୍ନ ଆଗକୁ ଆଗକୁ
ଦେଖାନାହିଁ ମାୟାବିନୀ
ଅନାବିଳ ହୃଦୟକୁ ପାଛୋଟି ନେବାକୁ

(ତିନି)

ସିଏ ମୋତେ ନାହିଁ ନାହିଁ କଲା ସେଦିନ
ଯେବେ ମୁଁ ହାତ ଠାରି ଡାକିଲି
ସାନ ସାନ ନୀଳ ଦୁଇଆଖି ତା'ର

ଅସୁମାରୀ ଜୋଛନାରେ ଭରପୂର
ଛଟ୍‌ପଟ୍ ଆତ୍ମାଟାକୁ ଘୋଷାରି ଘୋଷାରି
ନିରାଶର ହାଇମାରି
ହୃଦୟ ଦର୍ଜାରେ ତା'ର ଠକ୍ ଠକ୍ କଲି -
ହାତରେ ମୋ ଏକଶତ ସ୍ୱର୍ଣ୍ଣ ମୁଦ୍ରା
ମାୟାବିନୀ ଦେଖା ଦେଲା ନତ କରି ମଥା
ଭାବିଲି ମୁଁ
ଏ କ'ଣ ଏ ଦେଶର ସଭ୍ୟତା !

(ଚାରି)

ଇଏ ଏକ କୁହୁକ ରାଇଜ
ଏଠାରେ ତା'ପରି ଅଛନ୍ତି ଅନେକ
ଅପହୃତା, ପରିତ୍ୟକ୍ତା, କାମାତୁରା
ରମଣୀର ଦେଶ -
ଛୋଟ ଛୋଟ ଅଂଧାରୀ ଗଳିରେ
ଅପହଞ୍ଚ ମଣିଷ ମନର ଉର୍ଦ୍ଧ୍ୱଶ୍ୱାସ -
ଧପ୍‌ପାବାଜି, ଡକାୟତି, ଚୋରା କାରବାର
ସହରର ବିତ୍ ରାସ୍ତା ପରେ
କେତେ ହୁଏ
କିଏ ବା ରଖୁଛି ତା'ର ହିସାବ ନିକାଶ ।

(ପାଞ୍ଚ)

ଗର୍ବ, ଅହମିକା ଆଉ ଦୁର୍ନୀତିର
ଦୁର୍ଭେଦ୍ୟ ପ୍ରାଚୀର
ଅତିକ୍ରମ କରିବାକୁ ଶକ୍ତି ନାହିଁ କା'ର
ରୋଗୀ, ଶୋଷି ଭୋକିଲା ଲୋକଙ୍କ
ଚାରିଆଡ଼େ ଭିଡ଼
''ହା ଅନ୍ନ'', ''ଭିକ୍ଷାଂ ଦେହି'' ଅବା କେବେ
ବିଦୀର୍ଣ୍ଣ ହୃଦୟର ବିକଳ ଚିତ୍କାର

ହିଂସା, ଦ୍ୱେଷ, କଳହର ଚରମ ସୀମାରେ
ସ୍ୱାର୍ଥାନ୍ୱେଷୀ କେତେଜଣ ଛଦ୍ମବେଶ ସାଜି –
ସଭ୍ୟତା ନାଁରେ
କରିଯା'ନ୍ତି କେତେ କଣ... ...

(ଛଅ)

ସବୁ ଜାଣି ସବୁ ଅଂଗେ
ନିଭାଇଲା ପରେ ।
ଭାବିଲି ମୁଁ ଫେରିଯିବି ନୀଳ ପାରାବାରେ
ସ୍ମୃତି ବିଜଡ଼ିତ ମୋର ସେହି କାଗଜ ଡଂଗାରେ
ପୁଣି ଭାସି ଚାଲିଯିବି ସେଇ ଛୋଟିଆ ସହର
ଯେଉଁଠି ନଥିବ ସତ୍ତା
କୁହୁକିନୀ ମାୟାବିନୀ କୁହୁକ ଦ୍ୱୀପର ।



# ମୁଠାଏ ଶୂନ୍ୟତା

ଅବିଶ୍ରାନ୍ତ ପଥିକୀ ମୁଁ –
ଅବସନ୍ନ ଦେହଟାକୁ ମୋର
ଜୀବନର ଭିନ୍ନ ସ୍ୱାଦ ଦେଇ
କେତେ ଦୂର ଆଗେଇବି... ? ?
ହତାଶାର ପଦଚିହ୍ନ ଲଂଘିଛି ଆଗକୁ
ସମୟର ହାଲୁକା ଶେଯରେ
ମରିଚିକା ପଛରେ କ୍ଳାନ୍ତ
ବେଦୁଇନ୍ ପରି ଦଗ୍ଧିଭୂତ
ବାସନାର ମୋହ
ଅଂଧ କରେ ମୋତେ ଆଜି
କାହିଁ ମୋର ପ୍ରିୟତମା
କାହିଁ ତା'ର ପ୍ରୀତିବୋଳା ସ୍ନେହ ।

ଛୋଟ ଛୋଟ ଦୁବ ଘାସ
ସକାଳର କଅଁଳିଆ ଖରା
ସଦ୍ୟଜାତ ଶିଶୁର କୁଆଁକୁଆଁ ଡାକ
ଝରଣାର କୁଳୁକୁଳୁ ଶବ୍ଦ
ନୂପୁରର ରୁଣୁଝୁଣୁ
ପ୍ରଜାପତି ରଂଗୀନ୍ ଡେଣାରେ
ଫୁଲରେଣୁ
ସବୁ କିଛି ମୋ ପାଇଁ ସ୍ୱପ୍ନ ଆଜି
ଘୁରି ବୁଲେ ରଣାଂଗନେ
ମୃତ ସଇନିକ ସାଜି ।

ବୟସର ବୁଢ଼ିଆଣୀ ଜାଲେ
ଛନ୍ଦିହୋଇ ଭୋଗେ ଆଜି
ଅସହ୍ୟ ଯଂତ୍ରଣା
ବିଗତ ସ୍ମୃତି ସବୁ ଏକାଠି ହୁଅନ୍ତି ମୁହୁର୍ମୁହୁଃ
ବିଚଳିତ ମନ ମୋର ଧକ୍କା ପାଏ
ପ୍ରିୟତମା ବେଖାପ ଭାଷାରେ ।
ଅଲୋଡ଼ା ଏ ଜୀବନ ମୋ
କାହିଁ ବା ବଂଚିବି –
ଲୁହ ମୋର ମାନେନା ବଂଧନ–
ଅନାଗତ ଭବିଷ୍ୟତ କଥା ଭାବି
ହୃଦେ ମୋର ଜାଗଇ କଂପନ ।

ଦେଶରୁ ବିଦେଶ ଯେବେ ଗଲି
ରାତିର କଳା ପରଦା ଆଢ଼େଇ ଆଢ଼େଇ
ବାଳସୂର୍ଯ୍ୟର ରକ୍ତିମ ଆଭାରେ
ଆଲୋକିତ ହେଲା ମୋର
ଭିତରର ଅଂଧକାର –
ଜଳିଗଲି – ଜଳିପୋଡ଼ି ପାଉଁଶ ହେଲି ମୁଁ
ଆଖି ଖୋଲି ଦେଖିଲି
ଏ ସଭ୍ୟ ଶିକ୍ଷିତ ସମାଜକୁ ।
ସ୍ନେହ ନାହିଁ ଶ୍ରଦ୍ଧା ନାହିଁ ଏଠି
ଏଠି ଲୋକ ପାଏନା ଆଦର
ଆଜିର ବଂଧୁ ପୁଣି କାଲି ହୁଏ ସାତ ପର
ଉପରେ ଭଦ୍ର ଭଳି ଥାଇ
ଭିତରେ ଅଭଦ୍ରତାର ସଂକେତ ଦିଅଂତି
ସେହି ମୁଷ୍ଟିମେୟ କେତେଜଣ
ଶୋଷଣ କଷଣ ଆଉ ଦୁର୍ନୀତିର
ପାରାବାରେ ସେମାନଂକ ଘର ।
ଏଠାରେ ପାଏ ନା ସ୍ୱାମୀ

ସ୍ତ୍ରୀର ଅଯାଚିତ ସ୍ନେହ
ଶୁଣିବାକୁ ମିଳେନି ପୁଅର
ସେ ମାଆ ମାଆ ଡାକ ।
ଭାଇ ଭଉଣୀ ଭିତରେ ନଥାଏ ନିବିଡ଼ ସଂପର୍କ
ନିଃସହାୟା ତରୁଣୀ କେଉଁଠି
ପାଏନା ଆଶ୍ରୟ
ବିପଦେ ଆପଦେ କେହି
ଦିଏନା ଅଭୟ
କଳଂକିନୀ ସମାଜଟା
ମୁଂଡ କୋଡ଼ି କାଂଦେ ।
ଅନେକ ଲାଂଛନା ପ୍ରବଂଚନା ଦେଇ
ଏଇ ଦିନ ଗୁଡ଼ା ବିତେ ।



## ମଣିଷ, ଦେବତା ଓ ଅସୁର ଉପାଖ୍ୟାନ

ମଣିଷମାନେ ହସିଲେ–
ଗର୍ବରେ, ଦମ୍ଭରେ, ଖୁବ୍ ଉଚ୍ଚ ସ୍ୱରରେ
ଖୋଲାଖୋଲି ଭାବରେ ।
ଶକ୍ତ ପଞ୍ଝାରେ ତାଂକ
ଅସୀମ ଶକ୍ତି
ମୁକ୍ତ କଂଠରେ ତାଂକ
ସ୍ୱ ସ୍ୱ ଦୃଢ଼ ଅଭିବ୍ୟକ୍ତି
ଆଖି ପାଉଥିବା ପର୍ଯ୍ୟଂତ
ଇଲାକାର ମାଲିକ ସେମାନେ
ତାଂକ ଦୃଷ୍ଟିରେ ଅନ୍ୟାନ୍ୟ
ଜୀବଜଂତୁ ହେୟ ଓ ନଗଣ୍ୟ ।
ତାଂକ ବିଚାରରେ ସେହିମାନେ ହିଁ
କେବଳ ଶୁଦ୍ଧପୂତ, ନିଷ୍କଳଂକ
ତାଂକଠି ଆଦୌ ମଳିଧୂଳି ନାହିଁ
ଅଂଧାର ପାଚେରୀ ଡେଇଁ
ଆଲୁଅ ନଦୀରେ ପହଁରିବାକୁ
ସେମାନେ ଚାହାନ୍ତି ।
ସେ ନଦୀର କୂଳ ଓ କିନାରା
ପୂରାପୂରି ଗୋପନୀୟ
କେବଳ ସେହିମାନଂକୁ ହିଁ ଜଣା
ସେମାନେ ସମସ୍ତେ ସ୍ୱୟଂକ୍ରିୟ
ଆଉ ଯାହା କିଛି ଆତଯାତ
ତାହା ତାଂକରି କରୁଣା ।
ଦେବତାମାନେ ଅନୁଶୋଚନାରେ
ଭାଂଗିପଡ଼ିଲେ

ଯେତେହେଲେ ମଣିଷ ତାଂକ ଦେହ ମଳୁକୁଟିରୁ
ତିଆରି ନା ।
ସହିହେବନି ଏତେ ଗର୍ବ, ଏତେ ଦମ୍ଭ,
ଦେଖିହେବନି ମଣିଷର ଏତେ ପରାକ୍ରମ
ମଣିଷ ଆଜି ହୋଇଛି
କାଳଜୟୀ ଓ ମୃତ୍ୟୁଞ୍ଜୟୀ
ବିପଦ, ଆପଦରେ ଲୋଡୁନି ଅଭୟ ।
ବାବରା ଖାନିଆ ହୋଇ ବୁଲୁଚି
କହିଲେ ଦୁନିଆ ଛଡ଼ା କଥା କହୁଚି
ପୂଜା, ପାର୍ବଣ ଆଦିକୁ
ଏ ପୃଥିବୀରୁ ଦେଇଛି ବିଦାୟ ।

ଚିନ୍ତା ଚଇତନ କାଟି
ସମସ୍ତେ ଗୋଟିଏ ଗୋଟିଏ
ପୋଖତ ଗୁରୁ
ଯେଝା ହାତରେ ଯିଏ ଚଉଦା ଫା'
ବେଳ କାହିଁ ପୂଜା ଆରାଧନା କରିବାକୁ
ସମୟ କାହିଁ ଏ ଦେବତା ଗୁଡ଼ାଙ୍କୁ
ମର୍ତ୍ତ୍ୟକୁ ପାଛୋଟି ନେବାକୁ ।
ଅସୁରମାନେ ବାହୁନିଲେ
କାଂଦିଲେ ସକେଇ ସକେଇ
ଖୋଜିଲେ ବଳ ଓ ବୟସ
ଦାଂଭିକତା ଓ ପୁରୁଷପଣିଆ
କିଏ ନେଲା ସେ ଉଦ୍ଦାମ ବ୍ୟକ୍ତିତ୍ୱ ଗୁଡ଼ାକୁ
କିଏ ଘୋଷାରି ଧରିଲା ସେ
ଉଦ୍‌ଫୁଲ ଆତ୍ମା କେଇଟାକୁ
କେତେ ମୁନୀ ଋଷି
କେତେ ବା ଉର୍ବଶୀ – ରଂଭା
ମେନକା ଆଦି ଯେତେଯେତେ ଥିଲେ

ପଇଁତରା ମାରଂତି ଚାରିଆଡ଼େ
ଲୋଳିତଚର୍ମ ଅସୁରଂକୁ ଦେଖି
ଦେହରେ ଅସୁରଂକ
ନାହିଁ ଆଜି ଶକ୍ତି
ମନରେ ବି ନାହିଁ ଅନୁରକ୍ତି
ମଣିଷର ତେବେ ଗୋଲାମ
ହେବାକୁ ପଡ଼ିବ ନା !
ଏମିତି ଜୀବନ ରଖିବା
ମାନେ ଜୀଇଁ ଥାଉ ଥାଉ ମରିବା ।



## ଯୁକ୍ତବିଯୁକ୍ତ

ପ୍ରିୟାର କବରୀ ତଳେ ପ୍ରଣୟର ଝାପ୍‌ସା ଆଲୁଅ
ଦିକ୍ ଦିକ୍ ଜଳି ବାରଂବାର ନିଭିଗଲା ପରି
ଡିବିଡିବି ହେଉଥିବା ଘଟଣା ସମୂହ
ଇତଃସ୍ତତ ବୁଲିବୁଲି ବି ଲୁଚିଯାଂତି ।
ବିସ୍ମୃତିର ମଉଳି ପଡ଼ିଥିବା ପାଖୁଡ଼ା ଭିତରେ
ପରବର୍ତ୍ତୀ ସମୟ ଗୁଡ଼ାଂକୁ ଭେଟିଦେବାକୁ
ନିଜର ଅଂଗେ ନିଭେଇଥିବା ଅନୁଭୂତି ।।

ଶବ୍ଦ ଏକ ରୂପାୟିତ ଅଳସ ଆଖିରେ
ଆଂକିଦିଏ ଇଂଦ୍ରଧନୁ ଛଟା
ଦେହ ଏକ ଅପରୂପା ଦେହର ସାନିଧ୍ୟେ
ଟାଣିଦିଏ ଶତ ଯବନିକା
ଇଂଦ୍ରିୟ ଲାଳସାର ମୃତ୍ୟୁ ଓ ଆତ୍ମ ସଂଯମର
ପ୍ରୟାସ ହୁଏ ।
ଦେହର କୋଠରୀ ଭିତରୁ
ନିଖଂଜରେ ମନ ପଦାକୁ ଆସି
ଭାବୁଥାଏ ଯେ ଭାବୁଥାଏ ।।

ପରେ ପରେ ଅନୁଶୋଚନା ଆସେ
ଗୋଟେ ଅସଜ ନାଲିଘୋଡ଼ା ପିଠିରେ ବୋଝ ହୋଇ
ଧରିଥିବା କାଗଜ ଟୁକୁରା ଭିତରେ
ଅନୁଭୂତିର କାଳରୂପ ଦେଖାଦିଏ,
ଦେହ ଶୀତେଇ ଆସେ, ହାତ ଅଟକିଯାଏ
ଛୁଇଁବାକୁ – କିଂତୁ ଯେତେହେଲେ
ମନ ଝୁରୁଥାଏ ଯେ ଝୁରୁଥାଏ ।।

•••••

## ବେକାର – ସବୁରି ଆଖିରେ ଶିକାର

ଗଛରୁ ପତ୍ର ଝରିଯାଏ......
ଅକସ୍ମାତ ସୂର୍ଯ୍ୟର ପ୍ରକୋପେ
ସେ ପତ୍ରର ମୁଖ ଦର୍ପଣରେ
ଦିଶିଯାଏ ଗଲା ରାତିର ତିକ୍ତ ଅନୁଭୂତି
ଏବଂ ଆଗକୁ ଆସୁଥିବା ରାତିର ପାହାଂତି
ଗଛର ଜନ୍ମ କେବେ ପତ୍ର ବା କାହୁଁ ଜାଣିବ
ନୂଆକରି କଅଁଳିବା ଦିନ
ଗଛ ଦେହରେ ଭରିଥିଲା ଅନେକ
ଆଶାର ତୋରଣ
କୁନିକୁନି ପତ୍ର ଗହଳରେ
ଖୋଳିଥିଲା କେତୋଟି ମହମହ ଫୁଲ
ଚିକ୍କଣିଆ ଆକାଶ ଛାତିରେ
ସତେ ଯେମିତି ତାରାର ଫସଲ ।

କେତେ ଖରା କେତେ ବର୍ଷା ହାଡ଼ଭଙ୍ଗା ଶୀତର ସକାଳ
ପେଛା ପେଛା ବାସ୍ନା ଫୁଲ ଜହ୍ନ ରାତି ଏ ଡାଳ ସେ ଡାଳ
ହୋଇ ବୁଲୁଥିବା ଛୋଟବଡ଼ ଅନେକ
ଚଢ଼େଇଂକ କିଚିରି ମିଚିରି ଗୁଲିର ଆସର
ଏପର୍ଯ୍ୟଂତ ସବୁକିଛି ମନେଅଛି ତା'ର
କଅଁଳିଆ ଦେହ ତା'ର ଯେବେ ବଡ଼ ହେଲା
ଲୁଚି ଯାଇଥିବା ଶୀରା ପ୍ରଶିରା ସବୁ ଆଖି ମେଲିଲେ
ଉପରୁ ନିର୍ଦ୍ଦେଶ ଆସିଲା
ନିଜେ ଖାଅ ଅନ୍ୟକୁ ଶୁଣାଅ
ଅଳସ ଦେହ ତା'ର ଦୋହଲି ଗଲା
କା'ର ଗୋଟେ ଶକ୍ତ ଧକ୍କାରେ
ଉଜ୍ଜୀବିତ ହେଲା ମନ ତା'ର
କର୍ତ୍ତବ୍ୟର କଡ଼ା ଡାକରାରେ ।

ବଳ ତା ଯାଇଚି ଲିଭି
ମନରୁ ଲିଭିଛି ସରାଗ
ଦେହରେ ଭରିଯାଇଛି ତା
କେତେ ରୋଗ କେତେ ବଇରାଗ
ଶୁଖିଲା ଡେଂଫ ତା'ର କିଏ
ଧୀରେ ଦେଇଅଛି ମୋଡ଼ି
ଆଲୁଅ ଦେହରେ ବହଲେ ଅଂଧାର
ସତେ କିଏ ଦେଇଛି ବିଛାଡ଼ି ।

ସେମିତି ଚାହିଁଛି ଗଛ
ଚିଂତା ନାହିଁ କି ଅନୁଶୋଚନା ନାହିଁ
ତା' ଦେହରେ ପୁଣି
ନୂଆପତ୍ର କଅଁଳିବ
ଶୁଖିଲା ପତ୍ର ସବୁ ଝଡ଼ିଯାଇଚି
ଭଲ ହେଇଚି
ବୁଢ଼ା ହଡ଼ା ବେକାର ଗୁଡ଼ାଙ୍କୁ
ସେ କାହିଁକି ପୋଷିବ ।



# ଚିଠି (୧)

ତୁମକୁ ଖାଲି ହଁ କରିଦେଲି
ବୋଲି ଏତେଟା ଭାବୁଚି
ସତ ଭାବ କି ମିଛ ଭାବ
ଯାହା କହୁଛି ସତ କହୁଛି–
ଏ ଯେଉଁ ବେଲୁନ୍ ଉଡୁଚି
ଦେଖି ପାରୁଛ ତ ?
ତା' ଭିତର ଫମ୍ପା
ଶୂନ୍ୟ ଭିତରେ ନିରାଲଂବ
ଅନେକ କୋଠରୀ – ଚାରିପଟେ
ତା'ର ସୁସଜ୍ଜିତ ଝଲମଲ
ଛୀଅଂତା ପାଚେରୀ
ବେଧଡକ ଉଡୁଚି / ପଡୁଚି
ମୌସୁମୀର ସଂଧାନୀ ଆଖିରେ
ମନେପଡୁଚି ଆଜି ସବୁକିଛି
ନବ ଜାତକର ରୂପ
ନବ ଚେତନାର ସ୍ୱରୂପ
ଶୁଣିଥିବା କଥାକୁ ରଂଗ ଦେଇ
ଦେଖିଥିଲି ତୁମକୁ ଅନେକ ।
ଯେତେଭାବେ କହିବିନି ତୁମକୁ
କହିଦିଏ – ମୋ' ଠାରୁ ସେ
ତୁମକୁ ଆହୁରି ଭଲ ପାଏ
ମୋ ଛାତିରେ ପାଦ ରଖି
ସେ ତୁମକୁ ନଚାଏ
ହେଲେ ରୂପସୀ !

କୁହ ନାହିଁ ତ କେବେ ମନଖୋଲି
କାହିଁ ସେ କାମ କଲ ବୋଲି ?
ପରେ – ଅନେକ ଚିନ୍ତା କର
ଅନୁଶୋଚନା ଅଭିମାନ
ଭିତରେ ଲୁହ ବି ଝରାଅ ।
ତଥାପି ଆତ୍ମା ତୁମ
ଲଭେନାହିଁ ଶାଂତି
ଛାଣୁଶୁଣି କରି ଚାଲ
ପୁରୁଣା ଘଟଣା ସବୁର ପୁନରାବୃତ୍ତି ।

ବୃତ୍ତର ସଂଜ୍ଞା କ'ଣ ଜାଣ ?
ସବୁ ଜିନିଷକୁ
କଳେ ବଳେ କଉଶଳେ
ଏକାଠି କରି ରଖିବା
ନା ଆଉ କିଛି ? ଏ ଯେଉଁ
ବେଲୁନ୍ ନା ଇଏ ବି
ଏମିତି – ଖାଲି ଏଇମିତି ।
ତୁମକୁ ଯା ବି କହିଛି
"ସବୁବେଳେ ସ୍ୱାବଲଂବୀ ହେବା ଭଲ" –
ହେଲେ ପାରିନି ।
ପରିସ୍ଥିତି ପରିବେଶ ସାଂଗେ
ଖାପ୍‌ଖୁଆଇ ପରକୁ ଆପଣା କରିବା
ଶତ ଚେଷ୍ଟାକରି ମନକୁ
ରସେଇ/ମଜେଇ ତୁମେ
ଦେଇଥିବା ଭାଷା ଟାଂଗୁଡ଼ିରେ
ପ୍ରୀତି ଫୁଲ ବି ନେଇଚି
ଉପହାର ସ୍ୱରୂପ–

ସ୍ନେହ ବଦଳରେ ପାଇଛି
କ'ଣ ଜାଣ ?
ତୁମେ ବା କାହିଁ ଜାଣିବ ?
(ଭର୍ତ୍ସନା, ତାଡ଼ନା ଆଉ ଯନ୍ତ୍ରଣାର ବର୍ଣ୍ଣ ବଇଭବ ।)
ତଥାପି ସନ୍ତୁଷ୍ଟ ନୁହଁ
ଏତେ କଷ୍ଟ ଦେଇ ବି ନିଷ୍ଠୁର
କେମିତି ବଂଚିବି କହ – ପାରୁନି
ସହି ରକ୍ତ ମାଂସ ଗଢ଼ା ଏ ଶରୀର ।

ଅଭାବର ବତାସୀ ଝଡ଼ରେ
ବେଲୁନ୍ ଯେବେ
ବାଡ଼େଇ/କଚାଡ଼ି ଫାଟିଯିବ
ସେତେବେଳେ କି ଦୁର୍ଦ୍ଦିନ
ଆସିବ ଜାଣ ?
ପବନ ପୁରେଇବାକୁ ଚେଷ୍ଟାକଲେ ବି
ଶକ୍ତିର ଅପଚୟ ହେବ ।
ତୁମ ସଂସାର ତ କିଛି
ଛୋଟିଆ ନୁହଁ – କେମିତି ଚଳିବ ?
ବେଲୁନ୍ ଫାଟିବା ପୂର୍ବରୁ
ଅନ୍ତତଃ ଥରେ ବସିଯାଅ
ସ୍ୱାଭିମାନ ଭାଂଗି ଥରେ
ଆଡ଼େଇ ଅନାଅ ।
ମୁଁ କ'ଣ ତୁମର ଶତ୍ରୁ
କରୁଛି ତୁମ ପଥରୋଧ
ମୁଁ ପରା ତୁମର ଚିରସାଥୀ
ଅତି ଆପଣାର – ହାତରେ ମୋ
ପ୍ରେମର ଆୟୁଧ ।

ତୁମେ ଯଦି ଚାହିଁବ
ଏ ବେଲୁନ୍ ସେମିତି
ଉଡ଼ିବ / ଉଡୁଥିବ
ତୁମେ ଚାହିଁଲେ
ଫାଟିଯାଇ ଶୂନ୍ୟରେ ମିଶିବ –
କୁଂଭାର ଚକ ଗଢ଼ିଲା ପରି
ତୁମେ ଯେମିତି ରୂପ ଦେବ – ସେମିତି ପାଇବ ।
ଦୁନିଆକୁ ଚିହ୍ନିନ
ଅଂଗେ ନିଭେଇଲେ ଚିହ୍ନିବ ।
ରହୁଚି – ସ୍ନେହ ନେବ ।



## ଯଥାର୍ଥ

ମୋର ସ୍ପଷ୍ଟ ମନେଅଛି
ସେଦିନ ତୁମର ସେ କଥା
କାହାକୁ ବାହାବା କରିବା ଅର୍ଥ
ନିଜ ଦୁର୍ବଳତାକୁ ବାହାରେ ଥୋଇବା ।
ତୁମର ସେ ନିତିବାକ୍ୟ ଉପଦେଶ
ଲାଗେ ଖାଲି ଥଟ୍ଟା ପରିହାସ
ନିଜକୁ ବଖାଣିବା ପାଇଁ
କିଏ କେବେ ଚେଷ୍ଟା କଲେ
ଏଣୁ ତେଣୁ କଥା କହି
ଆମର ତ ସମୟ ଗଲାଣି ଇତ୍ୟାଦି ଇତ୍ୟାଦି
କଥାରେ ଦିଅ ଯେ ଭୂଲାଇ
ତୁମର ସେ ଛଳନାର ହସ
ମେଂଟାଏନି ଜୀବନ ପରାଣ
ବରଂ ଭରିଦିଏ ଯେତେ ଦୁଃଖ
ଯେତେକ ଯାତନା–
ମନେହୁଏ ଆସୁଚି ବିକଟାଳ ରୂପ
ହାତେ ଧରି ମୃତ୍ୟୁ ପରୱାନା ।
ତୁମର ମିଠାମିଠା କଥା
ଗହନ ନିଦରେ ଶୋଇଛି
ହୃଦୟର ଚୌତରା ଦେହେ
ବିଶ୍ୱାସର ଗରଳ ମାଖିଛି ।

ପରିସ୍ଥିତିରେ ପଡ଼ି ଏତେବାଟ
ଚାଲି ଆସିଲି – ଅର୍ଦ୍ଧଷିତ ଛୁଆ–
ଗୁଡ଼ାଙ୍କୁ ମୁଠେ ଆହାର ଦେବା ପାଇଁ

ବାପାଙ୍କ ଇଚ୍ଛା – ମୁଁ ଯାହାଥିଲି
ପୁଅ ମୋର ସେୟା ହେବ
ଅନ୍ୟାୟ, ଦୁର୍ନୀତି ବିରୁଦ୍ଧରେ
ନିଜ ଅଂଗ ସଜେଇବ
ଲଗାମ–ଛଡ଼ା ଘୋଡ଼ାକୁ କରିବ ଆୟତ୍ତ
ଅଲୋଡ଼ା ଜୀବନ ବୁକେ
ଭରିଦେବ ପୁଷ୍ପ ପାରିଜାତ ।

ବାପାଙ୍କ ଇଚ୍ଛା ପୂରଣ ହେଲା
ସେ ଯାହାଥିଲେ ମୁଁ ସେଇଆ ହେଲି
ତାଂକ ଉପଦେଶରେ
ମୋ ଶ୍ରୀଅଂଗ ମଂଡିଲି ।
ଦିନକର କଥା – ଯାଇଥାଏ
ଗୋଟାଏ ଖାପଛଡ଼ା ହର୍‌କତି
ଯାନ୍‌କୁ ଧରିବାକୁ –
କେଡ଼େ ଆସ୍‌ପର୍ଦ୍ଧା ତା'ର
ଔଦ୍ଧତ୍ୟର ଚରମ ସୀମାରେ
ଗୁଳିଗୋଳା ବାରୁଦରେ ଭରପୁର
ଚକ୍‌ମକି ଆଲୁଅ ଦେହରେ ମୁହେଁମୁହେଁ
ଝାଡ଼ିଦେଲା ଦି' ପଦ ।
ଝିଂଗାସି ବସିଲା – କହିଲା –
"ବେଇମାନି ଟୋକା, କାଲି
ଏଠାକୁ ଆସି ତୋର ଏଡ଼େ ବହପ ।
ଯିବୁନା ଏଠୁ ଦେଖିବୁ
ତୋ ମାଲିକକୁ କହିବୁ ମୋ ନାଁ
ଜାଣିଗଲା ପରେ ଖଟ୍‌ଖାଟ୍ ବଂଦ ହେବ
ଠିକ୍ ତୁ' ବାଗକୁ ଆସିବୁ ।"

ମୁହଁରୁ ପାଣି ସବୁ ମରିଯାଇଥାଏ
ଆଖିରୁ ସେ ରଂଗଯାକ ହଜିଯାଇଥାଏ

ଫେରୁଥିଲି ମୋ ଇଲାକାକୁ
ନିସ୍ତୁକ୍ ଶୋଧିଗଲି ମୋ ମାଲିକକୁ ।
ହୁକୁମ୍‌ର ହାଜିରା ଦେଲିନି ।
ଯେଉଁ ମନ ଥାପିଛି ମୋ ଦେହରେ
କଳଙ୍କର ବେନାମୀ କାମନା
ଯେଉଁ ହାତ ରଚିଛି ମୋ ବିରୁଦ୍ଧରେ
ଦୁଃଖ ଆଉ କାରୁଣ୍ୟର ଛବି
ସେ ମନର ଅବସାନ
ସେ ହାତର ଲୋକସାନ
ଘଟିବ ନିଶ୍ଚୟ-
ଦୁନିଆକୁ ଦେବି ମୋର ନିଜ ପରିଚୟ ।

ଆଉ ଦିନେ-
ଆଖିରେ ନିଦ ଭାଙ୍ଗି ପଡୁଥାଏ
ଶୁଣିଲି ସେଇ ଏକାଲୋକ ପୁଣି
ଆଉ ଗୋଟାକୁ ଖତମ୍ କରିଚି ।
ଅଥୟ ମନ ମୋ ଛକ୍‌ପକ୍ ହେଲା
ଏକା ନିଶ୍ୱାସକେ ଚାଲିଲି
ଆଡ୍‌ଡା-ଛଳୀ ତା'ର ଖାଲି ଉଠିଲା ପଡ଼ିଲା
ଧମକ ଚମକର ଶେଷ ସୀମାରେ ମୁଁ
ସେ କ'ଣ ଡରିବାର ଲୋକ ?
ଢବ୍‌କା ପେଲି ଦେଇଚିଟି
ଥଟ୍ଟାରେ ଉଡ଼େଇଦେଲା ।
ଥାଇପଟାଳି ଭିତରୁ ଫେରିଆସିଲି
ଆଦ୍‌ମାଟା ମୋ ଦେହର
ଗୋଟିଏ କୋଣକୁ ମକ୍‌ଚି
ଛୋଟ ଦେଖାଦେଲା-
ପ୍ରତିରୋଧ ସବୁ ହେଲା ବୃଥା
ପ୍ରତିଦାନ କେବଳ ମହାଯାତ୍ରା
ଜୀବନଟା ଦିଶିଲା ଅନ୍ୟଥା ।

ଚେତନା–ଶୂନ୍ୟ ଦେହରେ ଚାଲିଲି
ଏବେ ତା' ପାଖକୁ
ମହାଯାତ୍ରାରୁ ମୁକ୍ତି ଦେବାକୁ
ସେ ହିଁ କେବଳ ପାରିବାର ଲୋକ
ମନଭୁଲା କଥାରେ ସେ ମନ ଭୁଲାଇଲା –
ଟାହିଟାପରାରେ ମୋତେ
ଉଠୁ ବସ୍ କଲା ।
ଆଲୁଅ ନିଭିଥିବା ବତୀଖୁଣ୍ଟିଏ ମୁଁ
ମୋ ଦେହକୁ ଛଳେଇଲି
ତା' ଭିତରର ଆଲୁଅରେ
ଜଳୁଥିବା ଦୀପଟିରୁ ବତୀ
କାଢ଼ିନେଲି ଦିନ ଦି'ପହରେ
ଦୀପ ଲିଭିଗଲା ସବୁଦିନ ପାଇଁ ।



## ସ୍ମୃତି ଓ ପ୍ରୀତି

ସ୍ମୃତି –
ଗୋଟେ ଛୋଟ ପିଲାର
ହାତ ତିଆରି କାଗଜ ଡଂଗା ।
ସେ ଡଂଗାର ମଂଗ ନାହିଁ
କେତେବେଳେ ବୁଡ଼ିଯାଉଛି
ସବୁଦିନ ପାଇଁ – କେତେବେଳେ ବା
ପହଁରୁଛି ତୁହାଇ ତୁହାଇ
ସ୍ୱପ୍ନର ସାଗରେ –
ଯାହାର କୂଳ ନାହିଁ କି
କିନାରା ନାହିଁ – ଅଛି ଏକ
ପ୍ରଶସ୍ତ ବେଳାଭୂମି
ଆଉ ତା' ଭିତରେ ଧୈର୍ଯ୍ୟ,
ସାହସ, ସାନ୍ତ୍ୱନା ଓ ଆଶ୍ୱାସନାର
ଏକ ସୁଂଦର କୋଠାଘର ।

ଅତୀତରେ ସବୁଦିନ ପାଇଁ
ହଜିଯାଇଥିବା ଗୋଟେ
ରାଜାଝିଅର କାହାଣୀ –
ଏଇ ବେଳାଭୂମିର କୋଠାଘର
ସେଦିନ ଖୁବ୍ ମଳିନ, ନିଷ୍ପ୍ରଭ
ଦିଶୁଥାଏ–
ସ୍ୱପ୍ନ ସାଗରର ଉଦ୍ଧତ ତରଂଗ
ସବୁ କୋଠାଘର ପାଦ ଛୁଉଁଥାଏ ।
ହଂତସଂତ ହୋଇ ମରୁଥିବା
ନିରୀହ ଝିଅଟିର କଂଠସ୍ୱର
ସ୍ପଷ୍ଟ ବାରି ହେଉଥାଏ

ଉପର ମହଲାର ଗୋଟେ ନିଭୃତ
କୋଠରୀ ଭିତରୁ ।
ଯୁବକର ଅନେକ ସମୟର ପ୍ରତୀକ୍ଷା
ତେବେ ମୂଲ୍ୟହୀନ ।
ବଂଧୁର ଏ ପଥ–
ଅତିକ୍ରମ କରିବାର ଶକ୍ତି
ନାହିଁ ତା'ର – ତଥାପି
କରିଚି ସିଏ ଆଗ୍ନେୟ ଶପଥ ।
ଝିଅଟିର କଂଠସ୍ୱର
ତା' ମନରେ କଲା ବଜ୍ରପାତ
ଚଂଚଳ ଚଂଚଳ ପାଦ ବଢ଼ାଇଲା
ଆଗକୁ । ଏ କ'ଣ ?
ଉପର ମହଲାଟା ଥରୁଚି
ଭୟରେ, କାତରରେ ଅତି ସଂତର୍ପଣରେ ।
ଥରି ଥରି ଆଉଜି ପଡୁଛି
ଶୂନ୍ୟରେ ସବୁଦିନ ପାଇଁ
ତା' ଭିତରୁ ଚାଲିଯାଉଚି ବାହାରି
ଗୋଟାଏ ଖିନ୍‌ଭିନ୍ ଦରଖଂଡିଆ
ଦେହଟା – ପ୍ରେମିକକୁ ତା'ର
ପଛରେ ପକାଇ ।

ପ୍ରୀତି –
ଗୋଟେ ଅମୁଲମୁଲ ଦରବ
ଯାହା ପାଇଁ ଯୁବକଟି ପାଗଳ
ଡେଣାକଟା ଚଢ଼େଇଟି ପରି
ଉଡୁଚି ସେ ଏ ଡାଳ ସେ ଡାଳ
କାଠିକୁଟା ତିଆରି ତା' ବସାଘରେ
ଆଜି ଜଳୁନି ଆଲୁଅ
ଅଂଧାର ଭିତରେ ଘୁରିଘୁରି

ସେ ଆଜି ହେଇଛି ଅଥୟ ।
ବେସାହାରା ବୁଲିଚି ସେ
ପ୍ରୀତି ନଦୀର ଆର ପାରେ –
ସ୍ୱପ୍ନ ସାଗର ବେଳାରେ ।

ସେ ଯେଉଁ ସୁଂଦର କୋଠାଘର
ଆଜି ପଡ଼ିଛି ଭୁଷୁଡ଼ି
ଉଦ୍ଧତ ତରଂଗ ସବୁ ତାକୁ
କ'ଣ ଦେଇଚି ଉପାଡ଼ି ?
କାଗଜ ଡଂଗା ଭାସୁଚି ସାଗର
ଦେହରେ ସିନା – ବହୁତ ଦୂରରେ
ଆଖି ପାଉଚି, ମନ ପାଉନି
ଯିବାକୁ ଇଚ୍ଛା ହେଉଚି – ଯାଉନି
ତା' ଭିତରେ ଦିଶୁଚି କୁନିକୁନି
କାହାର ସେ ଦେହ
ସିଏ ଆଉ କେହି ନୁହେଁ
ସେଇ ରାଜା ଝିଅ ।



## ଯଦି ନପାଏ ତାହାକୁ

ନିଃଶବ୍ଦ ଥିରିଥିରି ପବନରେ
ଦୋହଲି ଦୋହଲି
ହଲୁଚି ବରଡ଼ା ପତର ପରି
ଶୃଙ୍ଖଳା ଦେହରେ ତା'ର
ବାବରାଖାନିଆ ସବୁକିଛି
କାହିଁ ପଡ଼ିଛି ଝାଉଁଳି ।

ଅସ୍ତବ୍ୟସ୍ତ ବିତୃଷ୍ଣା ଦେହରେ
ଲାଗିଛି କଳଂକର ବେନାମୀ କାମନା
ଅଦୃଶ୍ୟ ନରମ ଆକାଶ ବୁକୁରେ
ଭାସୁଅଛି ହୃଦୟ ବେଦନା ।
ଅଭିଳାଷ ରାଜା ପୁଅ କା'ର
ଦେହେ ଭାଂଗି ଅନେକ ଅଳସ
ବିଷଧର ସାପ ପରି ଭୂଇଁରେ ଲୋଟୁଚି
ଚାଖିବାକୁ ମନର ବିଳାସ ।

ବିସ୍ତୃତ ଏ ଅଭିମାନୀ ପରାଣ ଦେହରୁ
ଝରୁନାହିଁ ଲୋତକର ଝର ।
ଶବ୍ଦ ଏକ ଧୂମାୟିତ ଶିଖାପରି
ସ୍ୱପ୍ନର ସହରେ ଉଡ଼ିଉଡ଼ି
ହୁଏ ଖାଲି ରାତି ଉଜାଗର ।
ନିବୁଜ୍ ଏକ ଜଂକ୍ ଲଗା ଗଂବୁଜରେ
ପଡ଼ିଅଛି ସିଏ ଏକାଏକା
ହତାଶାର ବାଲୁକା ଶେଯରେ
ଥାପୁଅଛି ପାଦ ତା'ର ହାଲୁକା ହାଲୁକା ।

ବିବର୍ଣ୍ଣ ଏ ପୃଥିବୀ କାଂଥରେ
ମାଖିଦେଇ ଇତିହାସ ତା'ର
ଆଜି ପୁଣି ଖୋଜୁଛି କାହାକୁ
ଜୀବନ ହାରିବ ସିଏ
ଭାଂଗିରୁଜି ଦେବ–
ରଖିଚି ସାଇତି ଯେତେ
ସ୍ନେହର ସଂଭାର
ଯଦି ନପାଏ ତାହାକୁ ।



## ହଠାତ୍ ଶୁଣିଲା ପରେ

ହଠାତ୍ ଶୁଣିଲା ପରେ –
ଦେହ ମୋର ଉଲୁସି ଉଠିଲା
ଆକାଶର ଗୋଟିଏ କୋଣରେ
ଲାଲ ରଂଗର ଆଭାସ ସାଂଗକୁ
ଦୁନିଆଟା ଭିନ୍ନ ଦେଖାଗଲା ।
ଟିକେ ବେକାଇଦା ହେଲେ
କ'ଣ ନ ହୋଇଯାଏ–
ଅଜସ୍ର ଆଶାର ଦେହୁ
ଶିରୀ ତୁଟିଯାଏ ।

ଏଇ ଆରବର୍ଷ କଥା
ପିଲାଟାଏ ନା–
ବାହାଘର କରିଦେଲେ ବାପା, ମା
ରାଜାଘର, ଦାସୀ ମୁହୁସୁଲି
ହାଉଯାଉ ଭିତର ବାହାର
ଏ ସୁବିଧା ଛାଡ଼ିଲେ
ମିଳିବ ନ ମିଳିବ
ଏମିତି କେତେ କ'ଣ ଭାବି ।

ନିମଂତ୍ରିତ ଅତିଥି ଭିତରେ
ମୁଁ ଥିଲି ବିବାହ ଭୋଜିରେ
ସେ ଯେଉଁ ଖିଆପିଆ
ଏପର୍ଯ୍ୟଂତ ମନରୁ ଯାଇନି
ସେ ଯେଉଁ ଭେଟାଭେଟି, କୋଳାକୋଳି
ଏଯାଏଁ ମନରୁ ଲିଭିନି ।

କେତେ ହସ ଖୁସି ଗପସପ
ଫୁସୁଫାସ ଆଉ ମଧୁର ଆଳାପ
ମନେ ପଡ଼େ ବାରଂବାର ମୋର
ସତେ ଯେମିତି ସବୁ ଆଜି ସ୍ମୃତିର ସଂଭାର ।

ସୁପ୍ତ ଭ୍ରୂଣଟିକୁ ଚିଆଁଇବା ପାଇଁ
ଚାଲିଥିଲା ପ୍ରବଳ ପ୍ରଚେଷ୍ଟା
ହାତ ହତିଆର ଷଡ଼ଯଂତ୍ର
ଆଉ ଘଂଟାଘଂଟା ଆଶାର ପ୍ରତୀକ୍ଷା
ବହୁ ଚିଂତାଦକ ପରେ ବସୁଧା ଫାଟିଲା
ତରଳ ଗରଳ ସାଂଗରେ
ଲାଲ୍ ପିଣ୍ଡୁଳାଟି ବାହାରି ଆସିଲା
ଯେଉଁ ଧଳା ପର୍ଦ୍ଦା ସାହାଯ୍ୟରେ
ମେଲିଥିଲା ପଥରର ଦେହ
ସିଏ ଭୁଲିଲାନି ଆଦୌ ଭିତର ସେନେହ
ରହିଲା ବାଂଧି ହୋଇ ଆବୋରି ଦେହକୁ
ପଠାଇଲା ଲାଲ୍ ପେଣ୍ଡୁଟିକୁ
ତା' ଆସିବା ମନା କରିବାକୁ ।

ପିଣ୍ଡୁଳାଟା ଗଡ଼ିଲା ଭୂଇଁରେ
ସୁପ୍ତଭ୍ରୂଣ ଜାଗ୍ରତ ଦେହରେ
ଆଲୋକିତ କଲା ଅଂଧାରର ଗଳି
ହସଖୁସି ଆମୋଦ ପ୍ରମୋଦ
ଭିତରେ ସଂସାରଟା ଉଠିଲା ଉଚ୍ଛୁଳି ।

ଧଳା ପର୍ଦ୍ଦା ଖଂଡକରେ ଏତେ ଶକ୍ତି
କୁଆଡୁ ଆସିଲା
ଉପର ଦେହଟା ସାରା
ଘା' ଘଉଡ଼ରେ ଭର୍ତ୍ତି ହୋଇଗଲା
ପୂଜ ରକ୍ତର ତୀବ୍ର ଗଂଧ

ଲାଲ୍ ପେଂଡୁଟିକୁ ଅସ୍ତବ୍ୟସ୍ତ କଲା-
ତା' ଠାରୁ ସବୁଦିନ ପାଇଁ ଚାଲିଯାଉଥିବା
ଏକାନ୍ତ ନିଜର ତାକୁ ବି
ହାତ ଠାରି ଡାକିଲାନି
କୋଳ କରିବାକୁ - ଟିକେ ଅଭୟ ଦେବାକୁ ।

କିଏ ଜାଣିଥିଲା ଏଡ଼େ
ସୁଂଦର ଦେହଟା ତା'ର
ଏତେ ଶୀଘ୍ର ଝଡ଼ିଯିବ -
କିଏ ଭାବିଥିଲା ଏଭଳି ବାସ୍ନା ଫୁଲ
ଗୋଟାଏ ଅକସ୍ମାତ୍ ଖରାରେ
ଏତେ ଶୀଘ୍ର ମୋଡ଼ି ହୋଇଯିବ ।
ଲୋକେ କଥା ହେଲେ
ତା'ର ଯେତେ ଦିନକୁ ଯୋଗଥିଲା
ସେ ରହିଲା
ଯାହାର କାଳ ପୂରିଲା ସେ
ଚାଲିଲା -
କେହି କ'ଣ ବୁଝିଲେ
ସେ ଅସାବଧାନତା, ଅବହେଳା
ଖାମ୍‌ଖିଆଲି ମନୋଭାବ -
ଯେତେ ଯାହାକଲେ ହାତରୁ ଥରେ ଖସିଲେ
ଡେଣୁଆ କ'ଣ ଲେଉଟି ଆସିବ ?



## ନିଭିଲା ଅତୀତ

ଏକ ଅଦ୍‌ଭୂତ ପରିବେଶର
ପରିସମାପ୍ତି ଅଭିସଂଧିସ୍ନୁ ମନରେ
ସତ୍ୟାସତ୍ୟ ଉପରେ ଆଧାରିତ
ଗୋଟେ ଛୋଟିଆ ଘଟଣା
ବିସ୍ମୃତିର ନିର୍ଜନ ସହରେ ଉଙ୍କୁସୁଚି ।
ସରାଗର ନିଭିଲା ଦିପାଳୀ
ରୋକଠୋକ୍ ହଁ, ନାହିଁ
ଭିତରେ ନିଭି ନିଭି ଆସୁଚି ।

ସେ ଏକ ଅଭୁଲା କାହାଣୀ
ନିରୋଳା ଜୀବନରେ ମୋର ତିକ୍ତ ଅନୁଭୂତି
ଅଶାନ୍ତ ଆତ୍ମାର ଅନୁଚିଂତା
ତଥା ବ୍ୟଥିତ ମନରେ ବେଦମ୍ ବିରକ୍ତି ।
ଅନେକ ଦିନ ତଳର କଥା–
ମନ ମୋର ଚାହିଁଥିଲା ତା' ମନର
ପୁଷ୍ପ ପାରିଜାତ –
ଦେହ ମୋର ଲୋଡ଼ିଥିଲା
ତା' ସୁନ୍ଦର ଦେହର ସାନିଧ୍ୟ ।
ବସଂତର ଚଇତାଳି ଡୋଳିଥିଲା
ତା' ମନରେ ଅନେକ ଆଶାର ଢେଉ
ଫଗୁଣର ରଂଗ ଖେଳ ମୋ ହାତରେ
ଦେଇଥିଲା ତା' ହାତର ଚିଟାଉ ।
ପରେ ପରେ ଆସିଥିଲା
ଦଳକାଏ ବଇଶାଖୀ ଝାଂଜି
ହସଖୁସି, ଗପସପ
ସବୁକିଛି ତା' ଭିତରେ ଯାଇଥିଲା ହଜି ।

ଯେଉଁ ହାତ ଚୋରି କଲା
ତା' ଦେହର ଯେତେକ ଇଲାକା
ଯେଉଁ ହାତ ଟାଣିଥିଲା
ତା' ଅଳସ ଆଖିରେ ହତାଶାର
ଶତ ଯବନିକା – ସେହି
ହାତ ରହିଲା ଅଟକି କାହାର ଇଂଗିତେ –
ଯାହା ମୁଁ ଦେଖିଲି ଖାଲି
ଛୋଟିଆ ଆଖିରେ କା'ର
ଜଳୁଥିବା ଦପ୍‌ଦପ୍ ନିଆଁରେ ପ୍ରକୋପେ ।



## ଭିନ୍ନ ବ୍ୟକ୍ତିତ୍ୱ

ଡାଲିଆଏ ଫୁଲ ଭିତରେ ଥିବା ଅନେକ ସଂବାଦ
ଭୟରେ ଥରୁଚି ମଂଥିହୋଇ ମହକ ସହିତ
ଟାଉଟାଉ ହେଉଅଛି ଛାଇ ନେଉଟା ଖରା ବେଳ
ରୋମଂଥନ କରିବାକୁ ଶୂନ୍ୟର ସକାଳ
ବଡ଼ ଆସ୍ୱକତିଆ ଲାଗୁଛି କାହିଁକି
ଡହରା ସେ ଟୋକା ନଗଦ ପଜା ଛୁରୀଟାକୁ
ଧରି କାହିଁ ଯେ ବୁଲୁଚି ପଦାରେ
କୁହନା ତାକୁ କିଛି – ରଗେଇ ଦିଅନା ତାକୁ
ଟିକିଏ କଥାରେ ଖାଲି ଆସୁଚି ଚିହିଁକି ।

ତିନି ଚାରିଟା ମଣିଷଙ୍କୁ ଖୁନ୍ କରିବା ପରେ
ସେ ଖାଲି ଡରଉଛି ହତିଆର ଧରି
ହାଣିଦେବ ମାରିଦେବ – ତା ଇଚ୍ଛା ହେବ
ଯାହା ଠାରେ –
ଯିଏ ତା' କଥାରେ ପଦାକୁ ଆସିବ ବାହାରି ।

କିଏ ଜାଣିଥିଲା ଦିନେ ସିଏ
ଏମିତିକା ହେବ –
ଭିନ୍ନ ପୋଷାକରେ ତା'ର ଅଂଗ ସଜେଇବ
ଲାଲ୍ ଲାଲ୍ ରଂଗୀନ ଆଖିରେ
ପଇସାର ଗୋଲାମ ବନିବ ।

ଭଲମଂଦ ନିକିତିରେ ତଉଲିବାକୁ ବେଳ ନାହିଁ ତା'ର
ବୁଦ୍ଧି ପରଖିବାକୁ ଫୁରୁସତ୍ ନାହିଁ
ଶୀଘ୍ର କାମ ସାରଦେଲେ ସିଏ ହେଉଚି ନିଶ୍ଚିଂତ
ଅପେକ୍ଷା କରିବାକୁ ସେ ହୁଏ ହଂତସଂତ ।

••◆••

## ଯମୁନାର ଉଜାଣୀ ସୁଅରେ...

ସିଏ ଏକ ଅଦେଖା ହାତର ସ୍ପର୍ଶ
ଅସ୍ପଷ୍ଟ ଭାଷାରେ ତୁଂଡଲଗା କେଇ ପଦ ମିଠା ମିଠା କଥା
ହତବାକ୍ ଆଗଂତୁକ କାହାର ସଂଧାନରେ
ଜୀବନର ପ୍ରତିଟି ମୁହୂର୍ତ୍ତରେ – ସଂଦିଗ୍ଧ ଚିତ୍ତରେ
ସବୁଜିମା ଏ ପୃଥିବୀର
କୋଣେକୋଣେ ଗଳି କଂଦି ରାଜରାସ୍ତା ପରେ ।

ସିଏ ଏକ ଅଜଣା ଇଲାକାର ସ୍ୱପ୍ନ ପୁରୀ
ରାଜା, ରାଣୀ, ଦାସ, ଦାସୀ, ସଭାସଦ୍ ଆଦି
ଅନେକ ପ୍ରଜାଂକର ନିତିଦିନିଆ ସମାବେଶ
ଫାଶୀଖୁଂଟ, ଜେଲ୍‌ଖାନା, କେବେ ଅବା ଜୀଅଂତା କବର
ନିର୍ଯ୍ୟାତିତା ରମଣୀର ବିକଳ ଚିତ୍କାର
ଆର୍ତ୍ତନାଦ ଭଗ୍ନ ହୃଦୟର ।

ସିଏ ଏକ ଅଚିହ୍ନା ଲୋକର ଚିହ୍ନା ଚିହ୍ନା ମୁହଁ
ସବୁ ଜାଣି ନଜାଣିଲା ପରି – ସବୁ ଶୁଣି ନ ଶୁଣିଲା ପରି
ଦେଖେଇ ଶିଖେଇ ଯାତୁ ସାତୁ ବାଜେ କଥା କହି
ମନକୁ ଭୁଲାଇ – କେତେ ସ୍ନେହ ଶ୍ରଦ୍ଧା
ରାଗ ରୋଷ ମାନ ଅଭିମାନ ।
ଭୁଲିଯାଇ ସବୁକିଛି ଶତ୍ରୁକୁ କରେ ଆଲିଂଗଂନ ।

ସିଏ ଏକ ଅଶାଂତ ଆତ୍ମାର ଅନୁଚିଂତା
ଗୋଲାପର ଫୁଲ ଶେଯ – ଉଦ୍ଧତ ଯୌବନ
ଭୋଗ ଲାଳସାର ମୋହ ସବୁକିଛି ବାଂଧି ରଖେ
ମମତାର ଥାଳ ଧରି ଭିକ୍ଷା ମାଗେ ଏପଟ ସେପଟ
ଶୂନ୍ୟତାର ବେଳାଭୂମି ପରେ ଖାଲି ହୁଏ ଛଟପଟ ।

ସିଏ ଏକ ଅବୁଝା ମନରେ ଦୃଢ଼ ଅଭିବ୍ୟକ୍ତି
ରକ୍ତର ନିବିଡ଼ ସଂପର୍କ – ପରକୁ ଆପଣା କରିବା
ଶକ୍ତିର ଅପଚୟ ମାତ୍ର
କ୍ଷମତାର ପ୍ରଲୋଭନ ଅଂଧକରେ
ବସୁଂଧରା କାଂଦେ
ଅନେକ ଲାଂଛନା, ପ୍ରବଂଚନା ଭିତରେ ବି
ବଂଚିବାକୁ ହୁଏ
କାମନାର ତରୀ ଭାସିଯାଏ
ଯମୁନାର ଉଜାଣୀ ସୁଅରେ ।



# ଖୋଲିଦିଅ ନିର୍ମମ ଶୃଙ୍ଖଳ

ମୁଁ ଥାଏ/ନଥାଏ କିଛି ଯାଏ ଆସେ ନାହିଁ
ତୁମ ନେଉଟାଣି ଫେରିବା ବାଟରେ
ଯେବେ ମୁହଁ ମାରି ଚାଲିଯିବ ଟିକେ
କାମ ଚଳିଯିବ ଆଉ କେହି ନ ଆସିଲେ ।

ଏତେ ବଡ଼ ଆୟୋଜନ ମୋର ବୃଥା ହୋଇଯିବ
ତୁମପରି କେତେଜଣ ଚିହ୍ନା ପରିଚିତ
ନଆସିଲେ ମଇଦାନ ପରେ
ହାତେ ଧରି ସ୍ନେହର ସଂଭାର
ଦେବା ପାଇଁ ମଧୁର ଇଂଗିତ
ଗାଇ ଗାଇ ନୂତନ ସଂଗୀତ ।

ନବୀନ ସୂର୍ଯ୍ୟ ଉଇଁବ ଜଳିବ ନୂତନ ଦିପାଳୀ
ଅତୀତର ଅଳିଆ ଆବର୍ଜନା ସବୁ ଜଳିପୋଡ଼ିଯିବ ।
କେଉଁ ଅଭୁଲା କଥାରେ ମନ ବଦଳିବ
ବ୍ୟଂଗ ବିଦ୍ରୁପ ଆଉ ଥଟ୍ଟା ପରିହାସ ଭିତରେ
ପଡ଼ିବ / ଉଠିବ ଏ ନଗର ଉଆସ
ନଥିବ ଶୋଚନା – ନାରୀ ନିର୍ଯ୍ୟାତନା
କାଚପରି ମସୃଣ ଏ ଇଲାକା ଦେହରେ
ଶୁଭ୍ର ଜ୍ୟୋତି ଝଟକିବ ।

ଯାହା କରିବା କଥା ଯେତେ ଶୀଘ୍ର କର
ଯାକୁ ତାକୁ ଡକେଇ କିଛି ଲାଭ ନାହିଁ
ଯେତେ ବାଧା ଯେତେକ ବଂଧନ
ଭାଂଗି ସବୁ କର ଚୂରମାର
ଖୋଲିଦିଅ ନିର୍ମମ ଶୃଂଖଳ
ମାଡ଼ିଚାଲ ଆଗକୁ ଧସେଇ ରସେଇ ।



## ଚିଠି (୨)

ଲେଖିବି ଲେଖିବି ବୋଲି
ବେଳ ହେଉନି, ଲେଖି
ବସିଚି ଯେ – ଭାଷା ପାଉନି ।
କେମିତି ଲେଖିବି / କ'ଣ ଲେଖିବି
ଭାବୁଚି / ରହୁଚି ଟିକେ ।
ଈଶ୍ୱରଂକୁ ତାଂକ ବୟସ ପଚାରିଚ ?
ମୋ ପ୍ରେମର ସେମିତି କିଛି
ମାପ/ଖାପ ନାହିଁ ।
ତୁମକୁ ବୁଝାଇବା ଏତେଟା
ସହଜ ନୁହେଁ
ସତରେ ପ୍ରିୟତମ –
ମୋ କଲା ସବୁ କର୍ମ
ତୁମକୁ କରିଛି ବ୍ୟଥିତ
ସେଥିଲାଗି ମୁଁ
ଦୁଃଖିତ / ଅନୁତପ୍ତ ।

ସେଦିନ ସଂଜରେ
ଚୁଆକରି ଆସିଥିଲ ଯେବେ
ତୁମ ବୋଉଂକ ସାଂଗରେ
କେତେ ଖୁସି ଗପସପ / ମଧୁର ଆଳାପ
ସବୁ ଆଜି ରହିଛି ସ୍ମୃତିରେ ।
ଥରେ ନୁହେଁ / ଦି' ଥର ନୁହଁ
ଆସିଥିଲ ବାରଂବାର
ଚୁପି ଚୁପି କାନେ ମୋର
କହିଗଲ ଯାହା ଯାହା
ସବୁ କ'ଣ ଦେଲ କି ପାଶୋରି

ସତରେ କହୁଚି ପ୍ରିୟା
ହୃଦୟ ଦରଜା ଖୋଲି
ମନେ ମୋର ନାହିଁ କିଛି
''କିଂତୁ'' – କିଏ ବା
ହେବ ତୁମ ସରି ?
ଆକାଶ ଥରିବା କେବେ ଦେଖିଚ ?
ଶୂନ୍ୟଶୂନ୍ୟ ମହାଶୂନ୍ୟ
ଅନଂତ ଗଗନ ମଧ୍ୟେ
ଶୁଣିଚ ତା'ର ଶୁଶୁକାଳି ?

ସମୟେ ସମୟେ ଏମିତି ହୁଏ
ପୃଥିବୀ କର ଲେଉଟାଏ
ଭିଡ଼ିମୋଡ଼ି ହୁଏ –
ଜ୍ୱଳଂତ ଅଗ୍ନିପିଂଡ କିଛି
ଜଳେ ଦାଉ ଦାଉ ।
ସୁକୁମାର ଦେହ ତା'ର ପୋଡ଼ି
ଭାଂଗିରୁଜି ଯଂତ୍ରଣାରେ
କଲବଲ ହୁଏ ମୁହୁର୍ମୁହୁ ।

ସେଦିନ ତୁମର ସେକଥା
''ଘରକରି ରହିବା''
ମୋତେ ଲାଗିଥିଲା ନୂଆ
କୁହୁକ ବଳରେ ସତେ ତୁମେ
କରିଲ କିମିଆ
ମିଠାମିଠା କଥା କହି
ଦେଲ ମନକୁ ଭୁଲାଇ
ଦୀପା, ମୀନା, କୁନି
ପୃଥିବୀକୁ ଗୋଟେ ପରେ ଗୋଟେ
ଆସିଲେ ଓହ୍ଲାଇ
କେତେ ଗାଳି /ରାଗ/ରୋଷ

ମୁଁ ନସହିଛି ?
ଦୁର୍ଦ୍ଦିନେ ତୁମର
ଛାତିକୁ ମୁଁ ପଥର କରିଛି ।
ତଥାପି କାହିଁକି
ପ୍ରିୟ ଚାହଁ ନାହିଁ ମୋତେ
ତୁମ ବିନା ଏ ଯମୁନା
ଖାଲି ଖାଲି ଲାଗେ –
ଦୁଃଖଭରା ଏ ଜୀବନେ
ବଞ୍ଚିବି କେମନ୍ତେ ।

କିବା କଥାରେ ଚଟ୍‌କିନା ରାଗିଗଲ
ତା' ପାଖରୁ ଫେରିଲି
ଯେତେବେଳେ ତୁମ ଲାଲ୍ ଲାଲ୍
ଆଖି କଲା ମୋତେ ମୂକ
ହେଲି ମୁଁ ଅବାକ
ସଂଦେହୀ ବୈଦେହୀ ସତେ
ପଡ଼ିଛି ହାବୁଡ଼େ ।
ଦାଂତ କଡ଼ମଡ଼ କରି ପାଖେଇ ଆସିଲ
ଗଳା ଧକ୍‌କା ଦେଇ ମୋତେ
ଦୂରେ ଠେଲି ଦେଲ ।

ଏତେ ଦିନ ପରେ ଆଜି
ପଡ଼ିଲକି ମନେ । ଶୟନେ / ସ୍ୱପନେ
ଅବା ଜାଗରଣେ ।
ଚିଠିରୁ ବୁଝିଲି ସମସ୍ତ ।
ଘରକଥା ତୁମ କଥା ହେଲି ଅବଗତ ।
ହେଲେ ପ୍ରିୟ – ପୁଣି ଥରେ କରୁଚି ମିନତି
ଦୋଷ ମୋର ଘେନା ନକରିବ
ମୋ' ରାଣ ନିଶ୍ଚୟ ଆସିବ ।

••◆••

## ଜହ୍ନ ବୁଡ଼ିଗଲା ପରେ

ଆଖି ମେଲିଲେ ନିର୍ମେଘ ଆକାଶ
ମୁକ୍ତ ଦରବାର ସେଇ ଜହ୍ନ ରାଇଜର
ଆଖି ବଂଦକଲେ ଅଂଧକାର ଜତୁ ଗୃହ
ଭିତରେ ଜଣାଯାଏ ଗୋଟେ ତାରା ବାହୁନୁଚି
ଜହ୍ନର କ'ଣ କମ୍ ଅଦଉତି ?
ସିଏ ଉଇଁଗଲା ପରେ ତାରା ନିଷ୍ପ୍ରଭ ଦିଶୁଚି ।

ହାତ ବଢ଼ାଇଲେ ଲାଗୁଚି
ଯେମିତି ଗୋଟେ କଅଁଳିଆ ଦେହ
ଛାଇଛାଇଆ ନିଦରେ ଘାରୁଛି ।
ଜହ୍ନ ରାଇଜରେ ବୁଡ଼ି ସପନ ଦେଖୁଛି
ରାଜାପୁଅ, ମଂତ୍ରୀ ଝିଅ ବୁଢ଼ୀ ଅସୁରୁଣୀ କଥା
ଜହ୍ନ ବୁଡ଼ିଗଲା ପରେ ସକାଳ ହେଉଛି ।
ହେଲେ ତାରା ମଉଳୁନି
ତା' ନିଦ ଭାଙ୍ଗୁଛି ଡେରିରେ ।

ସେ ଦିନର ମେଘ ସବୁ ତାକୁ ଅବୋରି ଧରିଲେ
ନିକୁଟେଇ କାଂଦୁଥିଲା ଜହ୍ନ ତା' ଭିତରେ
ଉସ୍‌କାଉଥିଲା କିଏ ତାକୁ ପଦାକୁ ଯିବାକୁ
ହେଲେ ଆଦବ କାଇଦାରେ ବଂଧା ତା'ର ଦେହ
ଲାଗୁଥିଲା ଚିହ୍ନ ବର୍ଣ୍ଣ ତା'ର ହୋଇଛି ନିଃଶେଷ
ତାରାକୁ ମିଳିଚି ଲଟେରୀ
ମେଘର ଫାଙ୍କୁ ସାନ ଦେହ ତା'ର
ଆଜି ହସେ କିରିକିରି ।



## ଆରପାଖ

ଆରପାଖୁ ଡାକ ଆସେ
ପାଣିରେ, ପବନରେ ଦେହରେ ମନରେ
ଆର ପଟୁ ଶୁଣାଯାଏ କିଛି କିଛି ଆଜିକାଲି
ପାହାଡ଼ର ପଥର ଛାତିରେ
ଶବ୍ଦ ପାରି ହୋଇ ଆସେ ସାତ ସମୁଦ୍ର ତେର ନଈ
ଧକ୍କା ଖାଏ ପାହାଡ଼ ଦେହରେ
ଭଂଗା ଦେହ ପୁଣି ତା'ର ଯୋଡ଼ି ହୋଇଯାଏ
ଏକ ଅଭଂଗା କଂଢେଇ ସିଏରେ ।

ଏପାଖରୁ ସେପାଖ କାହିଁ କେତେ ଦୂର
ମୋତେ କିଂତୁ ହେଇଟି ଲାଗୁଚି,
ଡାକେ ବାଟ ପରି
ଲଂବା ଲଂବା ରାସ୍ତା ଗୁଡ଼ା ଛୋଟ ଦିଶୁଅଛି
କିଏ ମୋତେ ଡାକେ ହାତ ଠାରି ।

ଏ ପାଖରୁ ମାୟା ତୁଟିଯାଏ ଆପେ ଆପେ
ସେପଟେ ମନ ଘର ଧରେ
ଚିହ୍ନା, ଜଣା ଏପଟର ଯେତେଯେତେ
କାହିଁ ପାଇଁ ଲୁଚନ୍ତି ସମସ୍ତେ ।

ଘରଛାଡ଼ି ଯିବାକୁ ଇଚ୍ଛା ହେଉଛି ପୁଣି ହେଉନି
ଯିବାକୁ ବେଶ ହେଉଛି ପୁଣି ଯାଉନି
ଏଠାରେ କଟେଇଛି ଯେତେ ଦିନ ଯେତୋଟି ମୁହୂର୍ତ୍ତ
ସବୁ ମୋ ମନେ ଆଜି ହୁଏ ଉଜ୍ଜୀବିତ ।

ମରଣ ଦୁଆରୁ ଲେଖିଚି ପ୍ରିୟାକୁ ଚିଠି
ଜୀବନର ଗୋପନ ପୃଷ୍ଠାରେ
ଛାଡ଼ି ଆସିଥିବା ମୋର ସବୁକିଛି
ସବୁଦିନ ପାଇଁ ଏଠାରେ ସେଠାରେ ।

•••◆•••

# ପ୍ରତାରଣା

ଭିଜାଭିଜା ବସଂତର ସ୍ୱପ୍ନିଳ ରଂଗମଂଚ ମଥାନ ଉପରେ
ଶିରିଶିରି ମହୁଆ ପବନରେ ଥିରିଥିରି ଢାକିଢୁକି ହୋଇ ।
ପାଣିଚିଆ କାଚକେଂଦୁ ସକାଳର ଭିଟାମାଟି ନରମ ଦେହରେ
ଆସିଥିଲୁ ପ୍ରିୟତମା ଦରଦୀ ଗଳାରେ ତୋର ଗୀତ ଗାଇଗାଇ ।।

ଅଂଧାରିଆ ମେଘର ଫାଙ୍କରେ
ନାଲିନାଲି କୁନି ଦେହ ଦେଖାଗଲା ପରି
ନିଭିଲା ଆଖିରେ ତୋର ଦପ୍‌ଦପ୍ ଜଳୁଥିଲା ପ୍ରଣୟର ନିଶା ।
ଖୁମାଣ ପକେଇ ବସିଥିଲୁ ନେଥେଇ ଫୁଲିଲୋ ତୁ
ଦେଖିବାକୁ ସଉଖୀନ୍
ମନ ମତାଣିଆ ମୋଗଲ ତାମସା ।।

ତୋର ସେହି ମନଲୋଭା ଦେହ ଆଉ ଆଖିର ଇସାରା
ଭାଂଗିଦେଲା ଶକ୍ତ ବାଦ୍‌ଶାହୀ ମନର ବଂଧନ
ବୁଣିଦେଲା ପଂଚୁରଂଗୀ ଗାଲିଚା ଉପରେ
ପୋଷପୋଷ ସ୍ନେହର ଗଜରା
ମନେହେଲା ଛିଡ଼ିପଡ଼ିଛି
କଂଦର୍ପର ସବୁ କାମବାଣ ।।

ବେଖାପ୍ ଭାଷାରେ ତୋର ଥିଲା ଅତ୍ୟୁଜ ସ୍ୱରର ଶବ୍ଦ
ନିତ୍ୟନୈମିତିକ ଜୀବନରେ ଝଡ଼ ହାୱାର ସୂଚନା ।
ଅଯୁତ ମନରେ ତୋଳିଥିଲୁ ସୁକାମାର ସାନିଧର ସୌଧ
ବିଗତ ସ୍ମୃତିକୁ କରୁଥିଲୁ ନିତି ତନାଘନା ।।

ମନେନାହିଁ ତୋର କିଛି – କ'ଣ ତୋର କିଛି ମନେ ନାହିଁ
ବିବର୍ଣ୍ଣ ପୃଥିବୀ ଦେହରେ ପ୍ରାଣବଂତ ମୁହୂର୍ତ୍ତ କେତୋଟି ।
ଝାବୁଡ଼ି ଧରିଥିଲୁ ତୁ କେଡ଼େ ସରାଗରେ ଆହା
ସୁନେଲି ପରାଣ ଟିକକ ପାଇଁ ପୁହାଉଥିଲୁ ଦିନରାତି ।।

କାହିଁ କେତେଦୂରେ ରହି ପ୍ରିୟା ଆଜି ତୁହି ଗଡ଼ାଉଛି ଲୁହ
ବ୍ୟଥାତୁରା ମନରେ ତୋ ଜାଗିଅଛି ବିରହର ମଳିନ କବିତା ।
କୋହଭରା ଛାତିରେ ତୋ ପୁରିଅଛି ଭୁରିଭୁରି ସ୍ନେହର ଆଲୁଅ
ହେଲେ କାହିଁ ସେହି ବାଦ୍‌ଶାହି ମନ କାହିଁ ବା ସେ ଭାବପ୍ରବଣତା ।।



# ନର୍ସିଂହୋମ୍‌ରେ କେତୋଟି ଦିନ

ଚପାକସିଆ ଦେହରେ ତା'ର ଅନେକ
କ୍ଷତର ଚିହ୍ନ ଦାଉଦାଉ ହେଉଚି
ନୂଆ କ୍ଷତରୁ ଅଧିକାଂଶ ଲିଭିଗଲାଣି
ହେଲେ – ପୁରୁଣାଗୁଡ଼ାକ ଯିବାକୁ
ବୋଧହୁଏ ଟିକେ ସମୟ ଲାଗୁଛି ।

ଧୋବ ଧୋବଳିଆ କେଇଟା ଖାଲି
ଟଂଗରା ଟଂଗର ହେଉଛନ୍ତି
ସତେ ଯେମିତି ସେବା ଶୁଶ୍ରୁଷାର
ମୂର୍ତ୍ତିମଂତ ପ୍ରତୀକ ଏଇ
ବସୁଧା କୋଳରୁ ତ ଜନ୍ମ ଏମାନଂକର
କିଏ ତେବେ ଏମାନଂକ ଏକାଂତ ନିଜର ।

ଗୋଟିଏ କ୍ଷତ ନେଇ ଯାଇଥିଲି
ଡର, ଭୟର ପାଚେରୀ ଡେଇଁକରି
ଦୀର୍ଘ ବର୍ଷକର ଘା' କ'ଣ ମାଛି
ଘଉଡ଼େଇଲେ ଶୁଖିଯିବ ?
ଏଠି ସବୁ ଡରିଲେ ହାତ ଦେବାକୁ
ବାହାରୁ ଜଣକୁ ଡକାହେଲା
ପାରିବାର ଲୋକ ଖୁବ୍ ପାରେଖା
ନପାରନ୍ତେ ବା କିପରି
ଘା'କୁ ଦୁଇଫାଳ କରି ଚିରିଦେଲେ
ଭିତରୁ ମଂଛିଟାକୁ ଓଟାରି ଆଣିଲେ
ଯେତେଯେତେ ଥିଲେ ଏଠି
ସମସ୍ତଂକୁ କାବୁ କରିଦେଲେ ।

ସେଦିନ ସଂଧ୍ୟାରେ ମନେ ହେଲା
ଟିକେ ଫୂର୍ତ୍ତି କରିବାକୁ ।
ତା' ଦେହ ଭିତରକୁ ପଶିଲି

ସର୍ପିଳ ରାସ୍ତାରେ ତା'ର
ଏପଟ ସେପଟ ହେଲି
ଯିଏ ଯୁଆଡ଼େ ଦେଖେଇ ଦେଲା
ତା' ଭିତରେ ଖୋଜିଲି ।
ସବୁଠି ସେଇ ଏକା କଥା
କ୍ଷତ ଲିଭାଇ ଦିଅ – ଶାନ୍ତି ଦିଅ
ନା ପାରୁଚ ଯଦି ବାଟ ସଫା କରିଦିଅ
ଆମେ ଉପରକୁ ଚାଲିଯିବୁ ।
ଭରି ରହିଛି ଏଠାରେ
ବହୁ କଷ୍ଟ ବହୁତ ଯଂତ୍ରଣା
ଭାଂଗି ଯାଉଚି ମନରୁ ସବୁ
ଆଶା ସବୁ ସଂଭାବନା ।
ଆଉ ଆଗେଇ ପାରିଲିନି
ଫେରି ଆସିଲି ପୁଣି ସେହି
ନିଭୃତ କୋଠରୀ ଦେହକୁ
ଶୁଖି ଆସୁଥିବା କ୍ଷତକୁ
ପୁଣି ଦେଖିବାକୁ ।

ସାରା–ରାତି ଉଜାଗର ରହି ମୁଁ
ଦେଖିଚି – ଅନେକ ବିଭତ୍ସ ଦୃଶ୍ୟ
ଶୁଣିଚି ମୁଁ ଅନେକ ଶବ୍ଦ ଓ ଅଶବ୍ଦ
ବିଶେଷ କରି ରାତିର ପ୍ରଥମ ଓ ଶେଷ
ପର୍ଯ୍ୟାୟରେ ଭାଷା ଓ ଅଭାଷାର
ମିଳିତ ସ୍ୱାକ୍ଷର ।
ଦେହରେ ମୋ ଶକ୍ତି ନାହିଁ
ଧୈର୍ଯ୍ୟ ବି ନାହିଁ ଏଠି ବେଶୀଦିନ ରହିବାକୁ
ଘରକୁ ଫେରିଲି
ଘା'କୁ ଦର ଶୁଖିଲା କରି
ଆଖିରେ ଆଖିଏ
ପିଛିଲା ମୁହୂର୍ତ୍ତକୁ ଧରି ।

••◆••

## ସାମାନ୍ୟ କଥନ

ପ୍ରୀତି ଏକ ଫୁଲର ପାଖୁଡ଼ା
ଯଉବନ ଜୋଛନାର ଖେଳ
ଆତୁରିଆ ମନର ଗୋଲାପ
ପୋଷ ପୋଷ ସେନେହ ଫସଲ ।

ସ୍ମୃତି ଏକ ନଈର ପାହାଚ
ଛାଇଖାଇ ନିଦୁଆ ସହର
କ୍ଳାଂତ ଏକ ଅପରାହ୍ଣ କିଂବା
ପଉଷର ସଫେଦ୍ ସକାଳ ।

ତୃପ୍ତି ଗୋଟେ ହଜିଲା ବସଂତ
ନୂଆ ନୂଆ ଚେତନାର ରୂପ
ଖୋଜାଖୋଜା ଆଖିର ଇଲାକା
ଅପରୂପ ଆତ୍ମାର ସ୍ୱରୂପ ।



## ସଂଗ୍ରାମ – ଏକ ସଂଜ୍ଞାହୀନ ଆତ୍ମାର

ଇଏ ତ ମଂତ୍ର ନୁହେଁ – କୁହୁକ
ବାଲିସ୍ତୁପର ଭଗ୍ନାବଶେଷ
ଲୌହପିଣ୍ଡଟିଏ ତେଲ ନିଆଁରେ
ଗୁଡ଼େଇ ଗୁଡ଼େଇ ହେଲା ପରି
ଆତ୍ମାଟା–
ଢୋକେ ପିଇ ଦଂଡେ ଜିଇଲା ଭଳି
ପଡ଼ିରହିଚି ।
ନା ଜାଣୁଚି କ'ଣ ସବୁ ଘଟିଯାଉଚି
ନା ଜଣଉଚି
କ'ଣ ସବୁ ଜାଣୁଚି ।

ଅତୀତର ସୁନା ପଞ୍ଜୁରୀରେ
କୋକନଦଟିଏ ବଂଦ ଥିଲା
ଏବେ ଖିଡ଼ିକି ଦରଆଉଜା
କିଛି କ୍ଷଣ ପରେ ପୂରା ଖୋଲିଯିବ
କୋକନଦ ଚାଲିଯିବ
କିଂବା
ପୁଣି ଆଉଜିଯିବ ଦରଜା
ସିଏ ରହିଯିବ ଆଉ କିଛି ଦିନ ।

ଖାଲି କୁହୁକ ପରି ଲାଗୁଛି
ଦିନ କେତେଟା ତଳେ
ଶୁଭ୍ର ସତେଜ୍ ଖଡ଼ଖଡ଼ିଆ ଦେହଟା
ଏତେ ଶୀଘ୍ର ମଳିନ, ନିଷ୍ପ୍ରଭ
ହୋଇଯିବ – କିଏ ଜାଣିଥିଲା ?
କିଏ ଜାଣିଥିଲା ଅତୀତର ବାଲିବଂଧ
ଭୁଷୁଡ଼ି ପଡ଼ିବ ଗୋଟେ
ଅଚାନକ ଝଡ଼ର ପ୍ରକୋପେ ।

ରାସ୍ତା ତ ଯୋଜନ ଯୋଜନ ପଡ଼ିଚି
ହେଲେ କିଏ କେତେ ଦୂର ଯିବ ?
କିଏ ସଳଖ ଚାଲୁ ଚାଲୁ
ବାଟରେ ଝୁଂଟିବ / ପଡ଼ିବ
ସବୁ ତ ସେ ଲୀଳାମୟଂକ ଇଚ୍ଛା
ଏଥିରେ କା'ର ହାତ ନାହିଁ
ହାତ ଥିଲେ ବି ଶକ୍ତି ନାହିଁ
ତାଂକ ଇଚ୍ଛା ବିରୁଦ୍ଧରେ ଖେଳିବାକୁ ।

ତଥାପି ତ ଚେଷ୍ଟା ଅପଚେଷ୍ଟା
ସବୁ ଚାଲିଛି ।
ଏକ ଅପହଂଚ ଆତ୍ମାର ପରିଧି
ଡେଇଁଗଲେ ଯାଏ ।
ଦେଖଂତେ ଶେଷ ଅଛି କି
ପୁଣି ଥରେ ପୁନରାବୃତ୍ତି ହେଉଛି
ଅତୀତର–
ମିଳିଯାଂତା ବଂଚିବାର ସୁରାକ ଟିକକ
କିଂବା ମରିବାର ଯଂତ୍ରଣା ଅନେକ ।



## ଛାଡ଼ି ଆସିଥିବା ମୋର ସବୁକିଛି

ଦଂଡା ବରଗଛ ପରି ଥୁଂଟା ଦେହଟାରେ
ନେସି ହୋଇଚି ପରସ୍ତେ ବହଳ ଅଂଧାର
ଲଂବା ଚୌଡ଼ା ଆକାଶର ମେଲା ଛାତି ପରେ
ବିଛାଡ଼ି ଦେଇଛି କିଏ ମୃତ୍ୟୁର ଲୋହିତ୍ ସ୍ୱାକ୍ଷର ।

ଅଂକାବଂକା ସରୁ ସରୁ ରାସ୍ତା ଗୁଡ଼ାକର
ଆଗ ନାହିଁ କି ପଛ ନାହିଁ – ଆରଂଭ
ନାହିଁ କି ଶେଷ ନାହିଁ – ମଝିରେ ମଝିରେ ଖାଲି ଛକ
ଯେ କେହି ଲୋକ ଏଠାକୁ ଆସିଲେ
ଏଠି ଯେଉଁ ପରିସ୍ଥିତି / ପରିବେଶ – ସବୁ ଦେଖି
ସିଏ ତା'ର ହରାଏ ବିବେକ ।

କେତେ ଖରା କେତେ ବର୍ଷା କେତେ ଶୀତ କେତେଇ କାକର
ଭଲ ମଂଦ ଦୁଃଖସୁଖ ସବୁକିଛି ଏପର୍ଯ୍ୟଂତ ହୋଇନି ପାଶୋର
ସମୟର ସ୍ୱଚ୍ଛତା ଭିତରେ ଘୂରିଚି
ମୁଁ ତା'ର ଅଂଦିକଂଦି
ତଥାପି ଦେଖିନି ତା'ର ରୂପ ଲାବଣ୍ୟକୁ
ତା' ଦେହ ଛାଡ଼ି ପଳାଇ ଆସିଲା ପରେ
ପୁଣି ଆଜି ମନ ହୁଏ
ଫେରିଯାଆଂତି କି ପୁଣି ତା'ରି କୋଳକୁ ।

କିଛି ନଥିଲେ ବି ଆଲୁଅ ତ ଥିଲା
ଏଠି ଯେଉଁ ଅଂଧାରି ଟୁବରେ ପହଁରୁଚି
ଯାଠୁ ବହୁତ ଗୁଣରେ ଭଲ ସିଏ
ଏଠି ଯେଉଁ ଯଂତ୍ରଣା, ମନସ୍ତାପ ଆଉ ଦହଗଂଜ
ସହି ସହି ଦେହ ମୋର ହେଲାଣି ନିର୍ବାକ, ନିସ୍ତେଜ

ଆଖିରୁ ଯାଇଛି ଲିଭି ପ୍ରେମର ସରାଗ
ମନରୁ ଯାଇଛି ଘୁଂଚି ପ୍ରୀତି ଅନୁରାଗ
ହେ ମୋର ଅତୀତର ନିବୁଜ କୋଠରୀ !
ଦ୍ୱାର ଖୋଲିଦେ
ଦେଖେଇଦେ ତୋ ଭିତରେ ମୁଗ୍ଧ କମନୀୟ ରୂପ
ମିଳାଇଦେ ତୋ ଭିତରେ
ମୋ ଆତ୍ମାର ସ୍ୱରୂପ ।

ତୋ ଦେହର ଉଷ୍ଣତାରେ
ଚଳଚଂଚଳ କରିଦେ–
ମୋ ଅଚଳଂତି ଦେହର ଅଂଗପ୍ରତ୍ୟଂଗଗୁଡ଼ାକୁ
ବାଟ କଢ଼େଇ ନେ ମୋତେ ଏମିତି ଖଂଜରେ
ଭୁଲି ନଯାଏ ଯେପରି
ତୋ ଦେହରେ ଥିବା ଛକରେ ପହଂଚି
ମୋର ପୁରୁଣା ରାସ୍ତା ଓ ଅବସ୍ଥା ମାନଙ୍କୁ ।



## କହିବୁନି ଯଦି ଝିଅ

କହିବୁନି ଯଦି ଝିଅ ଯାହାଯାହା ଘଟିଗଲା –
କିଏ ଆସିଥିଲା ଓ କ'ଣ କଲା
ଖୋଜିବୁନି ଯଦି ଝିଅ ତୋ କୂଳ କିନାରା ।
ଯଂତ୍ରଣାରେ ଛଟପଟ ହେବୁ·ଖାଲି
ଦେହସାରା ମନସାରା ।।

ଏତୁରୁ ଏତୁଟିଏ ହେଲୁ ତୋର
ଅକଲ ହେଲାନି –
ମନରେ ମନକୁ ତୋ'ର ଯୋଡ଼ି ପାରିଲୁନି
ଦେହସାରା ବସଂତର ଦାଗ ।
ମୁଢ଼ିବାଲା, ରିକ୍ସାବାଲା ଯିଏ ଗଲା ଏ ବାଟଦେଇ
ତା'କୁ ଦେଖି ତୋ ମନରେ କାହିଁ ଏତେଟା ସରାଗ ।।

ମାଆ ତୋ'ର ଗଲାଣି ଅନେକ ଦିନୁଁ
ଭଂଗା ଭଂଗା କାଚର ଆଇନାରେ ବେଳେ
ବେଳେ ଝାପ୍‌ସା ମନେ ପଡ଼େ ।
ଝିଅ ମୋର ଲାଗିଲା ତୁମକୁ ବାରଂବାର
କିଏ କହେ ତୋର ବୟସ ଉହାଡ଼େ ।।

ଯେତେ ଦେଖୁ ମାଆ ଏଠି ଫୁଲ, ବନ
ଯଉବନ, ଆକାଶ, ପାହାଡ଼, ତାରା, ପ୍ରଜାପତି
ହସ, କାଂଦ, ଲୁହ, ପାଣି ଓ ପବନର ଖେଳ ।
ସବୁ ଖାଲି ମିଛ – ଡ଼ାହା ମିଛ
ସତ ଖାଲି ରାତି ମାଆ – ମିଛ ବି ସକାଳ ।।

ମୁଁ ଜାଣୁଛି ତୋ ଦେହର ଜ୍ୱଳନ
ଜାଣୁଛି ତୋ ନିଆଁଲଗା ଦରପୋଡ଼ା ଘର
ପୋଡ଼ି ପୋଡ଼ି ଯିବ ଆଉ ଟିକକରେ ।
ଦେଖି ପାରିବିନି ମା – ଦେଖାଇବି ପାରିବିନି
ମୁହଁ ମୋର କାହା ଆଗେ ଜନ୍ମ ଜନ୍ମାଂତରେ ।।

କହିବୁନି ଯଦି ଝିଅ ମନ ଖୋଲି ଅଂତତଃ
ମୋ ଆଗେ – ଗଲା କାଲି ମୁଁ ନଥିବା ବେଳେ.
ଯାହା ଶୁଣିଲି – ସେ ଟୋକାଟା କିଏ ?
ଦେଖିବୁ ସେ ତୋର କେହି ନୁହଁ
ଖାଲି ଟଳମଳ କାକର ଟୋପାଏ ।।



## ଟିକେ ରହିଯା ଦେଖିବୁ

ନରମ ନରମ ଖରା
ସକାଳର ମହକୁଛି
ଗେଂଡୁଫୁଲ ପେନ୍ଥାରେ ପେନ୍ଥାରେ
ନେସି ହୋଇଯାଇଛି ଦେହରେ ମନରେ .
ବାସୀ ହୋଇଛି, ଗଲା ରାତିର ସପନ ।
ଆସିବ ଆସିବ ବୋଲି
ଅନାଇଛି ଉତ୍ତପ୍ତ ମଧ୍ୟାହ୍ନ ।।
ନିଛାଟିଆ ଖରାବେଳେ
କାହିଁ କେତେଦୂର
ଘଡ଼ିଏ ପହରେ କୋଇଲିର କୁହୁ –
ତତଲା ବାଲିର
ତହତହ ଦେହେ ଖଇଫୁଟେ
ହଠାତ୍ କିଏ ପଶି ଆସେ
ପଛପଟ ଦରଜାରେ
ନୂଆନୂଆ ଲାଗେ ହାବଭାବ
ଆଖିରୁ ଅଗ୍ନୀ ବର୍ଷେ
ଆଙ୍କଟିଲା ପରି ଅନାଏ
ଧସେଇ ଆସେ ପାଖକୁ
ହାତଟାକୁ ତା' ମୁଂଡ ଉପରେ ରଖି
କହେ ରାଣ ଖା'
ମଉକାଟାକୁ ମହକାଇନୁ ତ ?
ଦଇବ ସହିବନି ତୋତେରେ
ହାଡ଼ ଗଜଗଜ ଦେହଟାରେ ।
ଶବଟାଏ ଶୋଇଛି –
ପଲପଲ ବିଲୁଆ ମାତିଛନ୍ତି –

କିଏ ଆସୁଛି, ଯାଉଛି,
ବାସନା ଅତରରେ
ଭିଜାଇ ଦେଇଛି ମୋ ଦେହକୁ, ମନକୁ
ଟିକେ ରହିଯା, ଦେଖିବୁ
ଖରା ନଇଁ ଆସିଲେ –ପାଗଳ ସଂଜକୁ ।।
ରାତି ଆସିବ ଗୋଟେ
ନୂଆ ବୋହୂ ବେଶରେ
ଦରଫୁଟା ଫୁଲର ହସରେ ।
ରହିଯା ଟିକେ ଦେଖିବୁ
ଦିହରୁ ତାତି ଓଲ୍ହାଇବ
କାହାର ସେ ଶୀତଳ ସ୍ପର୍ଶରେ
ତୋ ଆଗରେ ଦଳଦଳ
ପଙ୍ଗପାଳ ବେଢ଼ିଯିବେ
କିପରି ମୋତେ ଦେଖିବୁ
ତୋ ମୁହଁକୁ ଚାହିଁବି ନା
ମୋ ଦେହକୁ ଚାହିଁବି ?
ରକ୍ତ ମୋର ପାଲଟିଛି ବିଷ
ଜରାୟୁରେ ପ୍ରେମର ଉଲ୍ଲାସ ।
ଆଖିରେ ଆଖିଏ ଆଶଂକା
ଚାରିପାଖେ ଥଟ୍ଟା ପରିହାସ ।।
ସପନ ବୁଡ଼ିଯିବ
ପୁଣି ରାତି ପାହିଗଲେ
ଶବ ପଡ଼ିଥିବ ସେମିତି
ସକାଳ ଆସିବା ଯାଏଁ ।।



## ବିଳମ୍ବିତ ମୁହୂର୍ତ୍ତର ସ୍ୱର

ଯାହାଯାହା ଘଟିଗଲା ସବୁ ତୁମର
ମନେ ଅଛି – ରାଜେଶ ?
ଗଛରୁ ପତ୍ରଟିଏ ଖସିଲେ ବି
ଶବ୍ଦ କରେ । ବହୁଦିନରୁ ତୁମର ଆଉ
ଦେଖା ନାହିଁ । ପାହାଡ଼ ଉପରର ଭାଷା,
ଝରଣା କୂଳର ଆବେଗ ଓ ସମୁଦ୍ର ବେଳାର
ସାନିଧ୍ୟ ସବୁ ପାଶୋରି ଦେଇଛନା ?
ମଥାରୁ ନେଇଛ ସିଂଦୂର
ଆଖିରୁ କଜ୍ଜଳର ଗାର
ଦେହରୁ ଗୋଲାପର ଗଂଧ
ମନରୁ ପ୍ରୀତିର ଫସଲ ।
ମୋ ଭିତରଟା ଜଳୁଛି
ଆଖିକୁ ଜଳକା ଦିଶୁଛି ଚାରିଆଡ଼
ଭିତରେ ଭିତରେ କିଏ ଦଂଶନ କରୁଛି
ନିଦ ହେଉନି, ଭୋକ ଶୋଷ କିଛି ହେଉନି
ଇଚ୍ଛା ହେଉନି କିଛି କହିବାକୁ କି ଶୁଣିବାକୁ
ଅପେକ୍ଷା କରିବାଟା ବାସ୍ତବିକ ଯଂତ୍ରଣାମୟ ।
ରମୁଭାଇ ଆସିଥିଲା–
କହୁଥିଲା ତୁମେ ଖୁବ୍ ଉଚ୍ଚକୁ ଉଠିଛ
ବହୁତ ପଢ଼ିଲଣି – ଦର୍ଶନ, ସାହିତ୍ୟ, ରାଜନୀତି ବିଜ୍ଞାନ
ସବୁଥିରେ ଅପାର ପାଣ୍ଡିତ୍ୟ, ପ୍ରତିଷ୍ଠିତ ହୋଇଛ
ସଭା ସମିତି କରୁଛ, ଭାଷଣ ଦେଉଛ, ଦେଶ ବିଦେଶ ବୁଲୁଛ
ନେତା ହେବାକୁ ଯୋଜନା କରୁଛ ।
ଯେତେ ଯାହା କଲେ ବି ମୋ ପାଖେ ଧାରୁଆ ।
ଫେରେଇ ଦେଇ ପାରିବ କି
ଯାହା ସବୁ ମୋ ଠାରୁ ନେଇଛ ?

(ଦେହ, ମନ, ହସ, କାଂଦ, ପାପ, ପୁଣ୍ୟ ସବୁକିଛି)
କହି ପାରିବ କି ଯାହା ଯାହା ମୋତେ ସବୁ କହିଛ ?
(ତୁମ ବିଷୟରେ, ଦୁନିଆ ବିଷୟରେ)
ଶୁଣି ପାରିବ କି ଯାହା ମୋତେ ଶୁଣେଇଛ ?
(ଆଶା, ଆବେଗ, ଇଂଗିତ ଓ କରୁଣାର ବାଣୀ)
ତୁମେ ହାରିଯିବ ରାଜେଶ୍
ଯୁଧିଷ୍ଠିର ହାରିଗଲା ପରି
ଜୀବନର ପଶାପାଲି ବହୁତ ମଜଭୂତ
ମୋତେ ଦ୍ରୌପଦୀ କରିବାରେ ଲାଭ କ'ଣ ଥିଲା ଯେ,
ମୋ ଉପରେ ପଣ ଲଗେଇଲ
ମୁଁ ବଂଚିଛି ସତ – ହେଲେ ଯେମିତି
କାହା ଅପେକ୍ଷାରେ ।



## ସଂପର୍କ

ତୁମେ ହସିବାର
ଦେଖିଛି ଅନେକ ଥର
କାଂଦିବାର ଥରେ ଦୁଇଥର
ହସିଲେ ଝରିପଡ଼େ ମହମହ
ଗୋଲାପର ଗଂଧ
କାଂଦିଲେ ତୁଟିଯାଏ
ଭିଜାଭିଜା ସ୍ମୃତିର ସଂପର୍କ ।୧।

ତୁମେ ଗୋଟେ
ଅବୁଝା ନଈର ଧାର
ଅଶାଂତ ସମୁଦ୍ର କୁଆର
ଉତ୍ତପ୍ତ ଆଗ୍ନେୟଗିରି
କିବା ଭୟାନକ ଝଡ଼ର ଇଗଲ ।୨।

ତୁମର ସେ ପ୍ରତିଶ୍ରୁତି
ବହୁଦିନର ପ୍ରତୀକ୍ଷା
ବ୍ୟଥାତୁର କାମାତୁର
ମନର ଆବେଗ
ପ୍ରତାରଣା ଖାଲି ପ୍ରତାରଣା ।୩।



## ଦୁଃଖ ଆସେ

ଦୁଃଖ ଆସେ ପରବାସୀ ହୋଇ
ଦେହ ମନ ହୃଦୟ ଥରାଇ
ଏକାକୀ ଆସେନି
ଆସେ ସାଂଗ ସାଥୀ ପରିଜନ ନେଇ ।୧।

ଦୁଃଖ ଏକ ସୁକୋମଳ ଅଂଗର ପରିଧି
ଅବାରିତ ଅନୁତାପ ଶୋଚନାର ବାରି
ବଂଧ ବାଡ଼ ଘେରା ଏକ ଉତ୍ତପ୍ତ ଇଲାକା
କାମନାର ସରହଦ ଡେଇଁ
ଦିଏ ହୃଦୟ ବିଦାରି ।୨।

କିଏ ଦୁଃଖ ପାଏ ?
ହରିଶ୍ଚଂଦ୍ର ରାଜୁତି ହରାଏ
ସଂସାରର ବଂଧନ ଏଡ଼ାଏ
ଅହଲ୍ୟା ପାଷାଣ ହୁଏ
ସୀତାସତୀ ପରିତ୍ୟକ୍ତା ହୋଇ
ବିତାଏ ତା ଦିନ
କାହିଁ ସେହି ରାଜୀବ ଲୋଚନ ?
ଧୃତରାଷ୍ଟ୍ର କାଂଦେ – ଦୁଃଖର ଅନଳେ
ଝାସଦିଏ ହସ୍ତିନା ସୁଂଦରୀ
ତଥାପି ଦୁଃଖର ଅଂତନାହିଁ
ବିଦୀର୍ଣ୍ଣ ହୃଦୟେ ବସିଛି ସେ
ବିକଟାଳ ରୂପ ତା'ର ଧରି ।୩।

ଦୁଃଖ ଡରେ ଜଣକୁ
ବୁଦ୍ଧଦେବ ପରି ସ୍ଥିତପ୍ରଜ୍ଞ
କାମନା ନାହିଁ ଯା'ର
ଲାଳସାର ଊର୍ଦ୍ଧ୍ୱରେ ଯେ
ମାଡ଼େନା ସେ ଦୁଃଖର ଦୁଆର ।୪।

ଦୁଃଖ ବୁଝେ ବିବେକୀ ଲୋକର ମନ
ଯଂତ୍ରଣାରେ ଛିନ୍ନଭିନ୍ନ ହେଉଥିବା
ବ୍ୟଥିତ ଜୀବନ
ଅଭାଗିନୀ କପାଳରେ ଭରିଦିଏ ମମତାର ଫୁଲ
ସଂଧାନୀ ଆଖିରେ ମାଖିଦିଏ
ପୋଷ ପୋଷ ସୁଖର ଫସଲ ।୫।

ଦୁଃଖ ବଢ଼ିଗଲେ
ଆଖିରୁ ଝରେନି ଲୁହ
ମନରେ ଆସେନି କୋହ
ଚାରିଆଡ଼ ନିର୍ବାକ ନିସ୍ପଂଦ
କୋଳାହଳମୟ ପୃଥିବୀଟା ଯେମିତି
ନୀରବ ନିଶୂନ
ଏକାକୀନି ନିବୁଜ କୋଠରୀ ଭିତରେ
ଅଂତରାତ୍ମା ବିତାଏ ତା' ଦିନ ।୬।

ଦୁଃଖ ଆସେ
ଅନୁଶୋଚନା ପିଠିରେ
ଲଗାମଛଡ଼ା ଘୋଡ଼ା ପରି
ଦୋହଲାଇ ଦିଏ ମାନ ଅଭିମାନ
ବିଦାରି ପକାଏ ଉଦ୍ଧତ ଯୌବନ
ମୃତ୍ୟୁର କବଚ ପିଂଧି ନଚାଏ ଭୁଲତା
ଭାଂଗିଦିଏ ସ୍ୱପ୍ନର କାଚଘର ସବୁ
ଆଣିଦିଏ ଅସଫଳ ବାର୍ତ୍ତା ।୭।

ଦୁଃଖରେ ଭାଂଗିପଡ଼ି ନହେଲେ ଅଧୀର
ମୁକାବିଲା କଲେ ଯେତେଯେତେ ସବୁ ପରିସ୍ଥିତି
ଆପଣାଇ ନେଲେ ଦୁଃଖକୁ, ଯଂତ୍ରଣାକୁ
ଆପେ ଆପେ ଚାଲିଯାଏ ଦୁଃଖ
ଦେଇ ସୁଖର ସଂଧାନ
ନୂଆ ମନ ନୂଆ ଦେହ ଅମୃତ ସମାନ ।୮।



## ପ୍ରତିକ୍ରିୟା

ସବୁ ଶୁଣିଲା ପରେ
କହୁଛ କିଛି ଜାଣିନି
ଦେହରେ ମନରେ ଅନେକ କାମନା
ଆଶା ଓ ଆଶଂକାର ବର୍ଗକ୍ଷେତ୍ର ପରେ
ନଗ୍ନତାର ବିଭସ୍ନ ନମୂନା ।

ଶବ୍ଦର ସହର ଭାଂଗିଯାଏ
ଉପନ୍ୟାସର ପ୍ରତିଟି ପୃଷ୍ଠାରେ
ଚିତ୍ରଲେଖାର ହସ
ନିଦ ଭାଂଗେ ଚିତ୍ରିତ ସହରେ
ରକ୍ତର ସଂପର୍କ ତିକ୍ତ ହୁଏ
ପରିତ୍ୟକ୍ତ ନଗ୍ନ କୋଠରୀରେ
ପିପାସୁ ଆଖିରେ କାମନାର
ଅଗ୍ନି ନିର୍ବାପିତ ହୁଏ
ଛଳନା ଓ ପ୍ରବଂଚନା ଭଳି
ଶବ୍ଦ ସବୁ ବାସ୍ତବ ରୂପ ନିଏ
ଆତ୍ମାମାନ୍ତା ପୃଥିବୀ ସ୍ୱପ୍ନ ଦେଖେ
ରାତି ପାହିବାକୁ ଆଉ କେତେ ଡେରି
ବୟସ ଆଉ ଫେରି ଆସିବ
ନା ଯୌବନ –
ସବୁ ଏକାକାର
ସଂଦିଗ୍ଧ ମନର ।



୧

ତୁମ ଠାରୁ ହାରି ବାରଂବାର
ଜିତିବାର ସ୍ୱାଦ ଚଖେଇଛି
ମିଛର ଉଆସ ଭିତରେ
ବଂଚିବାର ଅଭିନୟ କରି
ସତରେ ମରୁଛି ।

୨

ଦୁଇପଦ କଥାରେ
ଜଳିଯାଏ ଦେହମନ
ସ୍ମୃତି ହୁଏ ପାଉଁଶ
ସଂପର୍କର ମୋହ ତୁଟିଯାଏ
ଯେତେକଲେ ପ୍ରୟାସ ।

୩

ଶବ୍ଦରୁ ଶବ୍ଦକୁ ଡେଇଁ ଉଡ଼ିବୁଲେ
ବୟସର ଚିତ୍ରିତ ସହରେ
ଅଭିମାନୀ ପ୍ରିୟା ମୋର
ବାରଂବାର ଦେଖାଦିଏ
କାମନାର ନଖ ଦର୍ପଣରେ ।

୪

ସ୍ୱପ୍ନରେ ତୁମେ ଯେବେ ଆସ
ମୋର ନିଦ ପାଲିଂକିରେ
ହଜିଲା ଦିନଗୁଡ଼ା
ପୁଣି ହଜି ଯାଂତି
ରାତିର ଶେଷ ପ୍ରହରରେ ।

୫

ଦେହର ପ୍ରଥମ ସ୍ପର୍ଶ
ଆବେଗର ମନଭରା ତୃପ୍ତି
ସ୍ୱପ୍ନର ଶତଦଳ ଅବା
ଅନାବିଳ ପ୍ରେମର ସଂପତ୍ତି ।

୬

ତୁମେ ହଜିଗଲେ
ନିଜେ ଲାଗେ ଆଉ କିଏ
ତୁମେ ମିଳିଗଲେ
ବଂଚିବାର ରାହା ପାଏ ।

୭

ଦାୟିତ୍ୱ ସମର୍ପି ଦେଲେ
ମୁକ୍ତି ମିଳେ ଯଂତ୍ରଣାରୁ
ପ୍ରଭୁତ୍ୱ ଢାହିର କଲେ
ଶକ୍ତି ମିଳେ ନିଜ ଠାରୁ ।

୮

ଶରଧାର ବାଲିବଂଧ ଡେଇଁ
ଛଳନାର ନଈ
ସାଗରର ବେଳାଭୂମି ପରେ
ଦିଏ ନିଜକୁ ହଜାଇ ।

୯

ପୁଣ୍ୟର ପଣତ ତଳେ
ପାପର ସହର
ଲୁଚି ଲୁଚି ଘୁଂଚିଯାଏ
କାହିଁ କେତେ ଦୂର ।

୧୦

ନିଦୁଆ ନିଦୁଆ ଲାଗେ
ଫଗୁଣର ପାହାଂତି ପହରେ
ପ୍ରୀତି ଫୁଲ ଝରିଯାଏ
ଭିଜା ଭିଜା କାକର ଦେହରେ ।

୧୧

ରକ୍ତ ନଦୀରେ ସଂପର୍କର
ନାଆ ଆଣିଲି ବାହି
କୂଳରେ ପହଂଚି ଦେଖିଲା ବେଳକୁ
ଖାଲି ମୁଁ ଅଛି
ଆଉ କେ' ନାହିଁ ।

୧୨

ହଜିଲା ଅତୀତ ଫେରିକି
ଆସିବ ପିଟିଲେ ମଥା
ପୋଡ଼ିଗଲା ମନ ଆଉ କି ହସିବ
ଯେତେ ଶୁଣାଇଲେ ମଧୁର କଥା ।

୧୩

ଜୀବନର ମାନେ ନୁହେଁ
କେବଳ ନିଜେ ହିଁ ବଞ୍ଚିବା
ମାୟାଜାଲେ ଛନ୍ଦି ହୋଇ
ବିଶ୍ୱାସରେ ନିଃଶ୍ୱାସ ମାରିବା

୧୪

ଅତୀତ ମୋ ପାଇଁ ମୃତ
ବର୍ତ୍ତମାନ ରହିଛି ଜୀବନ୍ତ
ଭବିଷ୍ୟତ ଏକ ସ୍ୱପ୍ନ ଭଳି
ଖାଲି ଭାବନା ପ୍ରସୂତ

୧୫

ସୁଖର ସାଗରେ ମୋର
ଭାସିଆସେ କାହୁଁ ଏକ
ଦୁଃଖର ବୋଇତ
ଜୀବନ ପାଏନି ରାହା
ବଞ୍ଚିବାକୁ ଯନ୍ତ୍ରଣା ସହିତ ।

୧୬

ଭିନ୍ନ ଏକ ପୃଥିବୀରେ
ପହଞ୍ଚି ଦେଖିଲି
ଛାଇ ଆଲୁଅର ଖେଳ
ଦଗ୍ଧ ପ୍ରାଣକୁ ସିକ୍ତ କରିଲ
ଝରାଇ ଅଶ୍ରୁ ଜଳ ।

୧୭

ତୁମଠୁ ଦୂରେଇ ଗଲେ
ମୋତେ ଲାଗେ ପଛରୁ
ସତେ କିଏ ଡାକୁଛି ଯେମିତି
ନିଶବ୍ଦ ରାତିରେ କେବେ କେବେ
ନିଦ ଭାଙ୍ଗିଗଲେ ମୋତେ ଲାଗେ
ମୋ ପାଖରେ କେତେବେଳୁ
ତୁମେ ବସିଛ ସେମିତି

୧୮

କେଡ଼େ ବେଗେ ଭୁଲିଗଲ
ମୋ ସାଥୀରେ କରୁଥିବା
ସବୁ ଗପସପ,
ଆପଣାଇ ନେଲ ନିଶବ୍ଦ
ସମୟ ସାଥେ ନୀରବ ଆଳାପ

୧୯

ଆଖି ତା'ର କଥା କହେ
ଚାହାଣୀରେ, ଓଠ ହୁଏ ସ୍ଥିର
ନିଶ୍ୱାସରେ ବାରି ହୋଇଯାଏ
ଶବ୍ଦର ସାମୁଦ୍ରିକ ଝଡ଼

୨୦

ଜୀବନ ନାଟକ ଶେଷ ଦୃଶ୍ୟରେ
ନାୟକ ହୋଇ ମୁଁ ବଞ୍ଚିଛି
ଜୀବନ ପ୍ରଦୀପ ଶେଷ ଦୀପଶିଖା
ଜଳି ଜଳି ଲିଭି ଆସୁଛି





ସ୍ମୃତି ସାଗରର
ବେଳାଭୂମିରୁ ଶବ୍ଦର ଶାମୁକା
ସବୁ ସାଉଁଟି ଆଣି କବିତା
ରାଇଜରେ ସୁନ୍ଦର ଏକ ଉଆସ
ଗଢ଼ିବାର ସ୍ୱପ୍ନ ନେଇ ବଞ୍ଚିଥିବା
କବଟିଏ-
ଡକ୍ଟର ଗୋବିନ୍ଦ ଚନ୍ଦ୍ର ଦାଶ

ପି : ସ୍ୱର୍ଗତ ମଧୁସୂଦନ ଦାଶ
ଜନ୍ମ ୬.୩.୧୯୫୫
ଗ୍ରାମ : ଜିତିକାର ସୁଆଁଲୋ, ଥାନା ବାଲିଅନ୍ତା, ଜିଲ୍ଲା-ଖୋର୍ଦ୍ଧା
ଶିକ୍ଷାଗତ ଯୋଗ୍ୟତା - ଏମ.ଏସ୍.ସି., ପି.ଏଚ୍.ଡ଼ି. (ରସାୟନ ବିଜ୍ଞାନ)

ବୃତ୍ତି : ଅଧାପନା, ସମ୍ପ୍ରତି ସାମନ୍ତ ଚନ୍ଦ୍ରଶେଖର ସ୍ୱୟଂଶାସିତ ମହାବିଦ୍ୟାଳୟ, ପୁରୀଠାରେ ରସାୟନ ବିଜ୍ଞାନ ବିଭାଗରେ ରିଡର ଭାବେ ଅବସ୍ଥାପିତ ।

ରୁଚି : କବିତା ଲେଖିବା, ସଂଗୀତ ଶୁଣିବା, ନୂଆ ନୂଆ ବହି ସହିତ ସମ୍ପର୍କ ଯୋଡ଼ିବା, ରସାୟନ ବିଜ୍ଞାନରେ ଗବେଷଣା ସାଙ୍ଗକୁ ବିଭିନ୍ନ ପତ୍ରପତ୍ରିକା, ସମ୍ବାଦପତ୍ର ଆଦିରେ ଗଳ୍ପ, ପ୍ରବନ୍ଧ, ବିଜ୍ଞାନ ଭିତ୍ତିକ ଲେଖା, ଶିଶୁ ସାହିତ୍ୟ ଆଦି ପ୍ରକାଶ କରିବା ।

